ପ୍ରକାଶକ:
ସ୍ୱାମୀ ଶିବେଶ୍ୱରାନନ୍ଦ
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର - ୭୫୧୦୦୨



ଦ୍ୱିତୀୟ ସଂସ୍କରଣ
ସ୍ୱାମୀ ସାରଦାନନ୍ଦ ଜୟନ୍ତୀ
୨୨ ଡିସେମ୍ବର ୨୦୦୯

ମୂଲ୍ୟ : ୭.୦୦ ଟଙ୍କା

ମୁଦ୍ରାକର
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଙ୍ଗ୍ ୱାର୍କସ୍
ଏ/୪୮, ରାମେଶ୍ୱରପାଟଣା
ଭୁବନେଶ୍ୱର-୨

MANTRA DIKSHYA : Published by, Ramakrishna Math, Vivekananda Marg, Bhubaneswar - 751 002, 2nd Edition, Price : Seven Rupees Only.

## ପ୍ରକାଶକଙ୍କ ନିବେଦନ

ଶ୍ରୀରାମକୃଷ୍ଣ କହିଛନ୍ତି, ''ଭଗବାନଙ୍କୁ ଲାଭ କରିବା ହେଉଛି ଜୀବନର ଉଦ୍ଦେଶ୍ୟ ।'' ସତ୍ୟସ୍ୱରୂପ ଭଗବାନଙ୍କୁ ଲାଭ କରିବା ପାଇଁ ଦୀକ୍ଷା-ଗ୍ରହଣ ପ୍ରୟୋଜନ । ଦୀକ୍ଷା—ଗ୍ରହଣ ସମୟ ମନୁଷ୍ୟ ଜୀବନରେ ଅତ୍ୟନ୍ତ ମୂଲ୍ୟବାନ ସମୟ । ଦୀକ୍ଷା-ଗ୍ରହଣ ପୂର୍ବରୁ ମନ-ରୂପକ ଜମି ପ୍ରସ୍ତୁତ ହୋଇଥିଲେ ଦୀକ୍ଷା ବିଶେଷ ଫଳପ୍ରସୂ ହୋଇଥାଏ । ଦୀକ୍ଷାପ୍ରାର୍ଥୀମାନଙ୍କ ଆବଶ୍ୟକତା ଦୃଷ୍ଟିରୁ 'ମନ୍ତ୍ରଦୀକ୍ଷା' ପୁସ୍ତିକା ପ୍ରକାଶିତ ହେଲା ।

ପୂଜ୍ୟପାଦ ସ୍ୱାମୀ ଭୂତେଶାନନ୍ଦଜୀ ମହାରାଜଙ୍କ ଉଦ୍‌ବୋଧନ ପତ୍ରିକାରେ ପ୍ରକାଶିତ ଦୁଇଟି ପ୍ରବନ୍ଧ, 'ଦୀକ୍ଷା ପ୍ରସ୍ତୁତି' ଓ 'ମନ୍ତ୍ରଦୀକ୍ଷା ଓ ସାଧନର ପରମପ୍ରାପ୍ତି'ର ସଙ୍କଳନ । ଶ୍ରଦ୍ଧେୟ ଶ୍ରୀମାନ୍ କିଶୋର ବିଟ୍ ମୂଳ ବଙ୍ଗଳା ଭାଷାରୁ ଏହି ପ୍ରବନ୍ଧ-ଦ୍ୱୟର ସୁନ୍ଦର ତଥା ସାବଲୀଳ ଓଡ଼ିଆ ଅନୁବାଦ କରିଛନ୍ତି । 'ମନ୍ତ୍ରଦୀକ୍ଷା'ର ପ୍ରକାଶନ ଅବସରରେ ଆମେ ତାଙ୍କର ଉତ୍ତୋରତ୍ତର ଆଧ୍ୟାତ୍ମିକ ଉନ୍ନତି ପାଇଁ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛୁ । ଦୀକ୍ଷାପ୍ରାର୍ଥୀ ଓ ଦୀକ୍ଷିତ ଭକ୍ତବୃନ୍ଦ ଏହି ପୁସ୍ତିକା ପାଠ କରି ନିଶ୍ଚିତ ଉପକୃତ ହେବେ ବୋଲି ଆମର ଦୃଢ଼ ବିଶ୍ୱାସ ।

୧୨ ଜାନୁଆରୀ ୨୦୦୧
ଜାତୀୟ ଯୁବଦିବସ

ବିନୀତ
ପ୍ରକାଶକ

# ଦୀକ୍ଷାର ପ୍ରସ୍ତୁତି

ଦୀକ୍ଷା ନେବା ପାଇଁ ଅନେକେ ଆଗ୍ରହ ପ୍ରକାଶ କରିଥାନ୍ତି । କିନ୍ତୁ ଦୀକ୍ଷାକୁ ଜୀବନରେ ଫଳପ୍ରସୂ କରିବାକୁ ହେଲେ ଆମେ ଯେଉଁ ଆଦର୍ଶକୁ ଆପଣଙ୍କ ନିକଟରେ ଉପସ୍ଥାପନ କରିବାକୁ ଚାହୁଁ, ସେହି ଆଦର୍ଶ ସମ୍ପର୍କରେ ଆପଣଙ୍କର ସମ୍ୟକ୍ ଧାରଣା ରହିବା ଉଚିତ । ଏଥିପାଇଁ ଆମର ନିୟମ ହେଲା—ଦୀକ୍ଷା ପୂର୍ବରୁ ଶ୍ରୀରାମକୃଷ୍ଣ, ଶ୍ରୀମା ସାରଦାଦେବୀ ଏବଂ ସ୍ୱାମୀ ବିବେକାନନ୍ଦଙ୍କ ଜୀବନୀ ଓ ଉପଦେଶ ସମ୍ପର୍କରେ ଧାରଣା ରହିବା ଆବଶ୍ୟକ । ସେଥିପାଇଁ ଆମେ ଦୀକ୍ଷାପ୍ରାର୍ଥୀଙ୍କୁ ପ୍ରସ୍ତୁତ ହେବାକୁ କହିଥାଉ । ପ୍ରସ୍ତୁତି ପରେ, ଦୀକ୍ଷା ନେବାକୁ ପରାମର୍ଶ ଦିଆଯାଏ । ଅନ୍ୟଥା ଅପେକ୍ଷା କରିବାକୁ କୁହାଯାଏ । ଏହି ପ୍ରସ୍ତୁତି ଥିଲେ, ଦୀକ୍ଷାର୍ଥୀ ଆମ କଥା ସହଜରେ ବୁଝିପାରେ ।

ଶାସ୍ତ୍ର ଅନୁସାରେ ଯେଉଁମାନେ ଦୀକ୍ଷା ଉଦ୍ଦେଶ୍ୟରେ ଗୁରୁଙ୍କ ନିକଟକୁ ଯାଆନ୍ତି, ସେମାନଙ୍କ ଜୀବନରେ ପୂର୍ବ ପ୍ରସ୍ତୁତି ରହିବା ଆବଶ୍ୟକ । ଉଦାହରଣ ସ୍ୱରୂପ ଏହି ଘଟଣାଟିକୁ ନିଆଯାଉ । ନାରଦ ଦୀକ୍ଷା ପାଇଁ ଭଗବାନ ସନତ୍ କୁମାରଙ୍କ ନିକଟକୁ ଗଲେ । ସନତ୍ କୁମାର କହିଲେ, ''ତୁମେ ଯାହା ସବୁ ଜାଣିଛ ପ୍ରଥମେ କୁହ, ତା'ପରେ ଉପଦେଶ ଦେବା କଥା ଚିନ୍ତା କରିବି ।'' ନାରଦ କହିଲେ, ''ଋକ୍‌ବେଦ, ସାମ୍‌ବେଦ, ଯଜୁର୍ବେଦ, ଅଥର୍ବବେଦ, ଷଡ଼୍-ବେଦାଙ୍ଗ, ପୁରାଣ ଓ ସାମାଜିକ ଶାସ୍ତ୍ରାଦି ଅଧ୍ୟୟନ କରିଛି । ଏତେ ଜାଣି ମଧ୍ୟ ମୋ ମନରେ ଶାନ୍ତି ନାହିଁ । ମୁଁ ଅତୃପ୍ତ ଓ ଅପୂର୍ଣ୍ଣ । ସର୍ବଦା ମୋ ଭିତରେ ଅସନ୍ତୋଷ ରହିଛି; ସେଥିପାଇଁ ଜୀବନରେ ଶାନ୍ତି ପାଉନାହିଁ ।'' ସନତ୍ କୁମାର ନାରଦଙ୍କୁ କହିଲେ, ''ନାରଦ, ତୁମେ ବହୁ ବିଷୟ ଜାଣିଛ; ତେବେ ତୁମେ ଯେଉଁସବୁ ବିଷୟ ଜାଣିଛ ତାହା ଶବ୍ଦ ମାତ୍ର । ତୁମେ ଶବ୍ଦବିତ୍, ଆତ୍ମବିତ୍ ନୁହଁ । ଯିଏ ଆତ୍ମବିତ୍ ହୁଏ ସେ କେବଳ ଶୋକରୁ ନିଷ୍କୃତି ପାଏ । ତୁମେ ଆତ୍ମବିତ୍ ନୁହଁ'' ବୋଲି ଶୋକରେ ଭାଙ୍ଗି ପଡୁଛ । ତା'ପରେ ନାରଦ ବିନୀତ ଭାବରେ କହିଲେ, ''ଭଗବାନ ! ମୁଁ କିପରି ଶୋକରୁ ନିଷ୍କୃତି ପାଇ ପାରିବି, ଆପଣ ମୋତେ ସେହି ଉପଦେଶ ଦିଅନ୍ତୁ ।''

ଏଥିରୁ ଜଣାଗଲା ଯେ ଦୀକ୍ଷା ନେବା ପୂର୍ବରୁ ମଣିଷର ମନରୂପକ ଜମିକୁ ପ୍ରସ୍ତୁତ କରିବାକୁ ପଡ଼େ । ବିହନ ବୁଣିବା ପୂର୍ବରୁ ଆଗ ଜମି ଚାଷ କରି, ସାର ଦେଇ ଜମିକୁ ପ୍ରସ୍ତୁତ କରିବା ଦରକାର । ତେବେ ଯାଇ ବିହନ ବୁଣିଲେ ଭଲ ଫସଲ ମିଳିବ । କିନ୍ତୁ ଆମେ ଯଦି ଚାଷ ନ କରି, ଜମିକୁ ପ୍ରସ୍ତୁତ ନ କରି, ସାର ନ ଦେଇ ଜମିରେ ଖାଲି ବିହନ ବୁଣିବା, ତେବେ ଭଲ ଫସଲ ପାଇବା ନାହିଁ । ସେଥିପାଇଁ ଜମିର ପୂର୍ବ ପ୍ରସ୍ତୁତି ଦରକାର । ତେବେ ଯାଇ ଆମେ ସୁଫଳ ପାଇପାରିବା ।

ଏଠାରେ ଆଉ ଗୋଟିଏ ବିଷୟ ଉଲ୍ଲେଖଯୋଗ୍ୟ । ପ୍ରସ୍ତୁତିର କିନ୍ତୁ ଶେଷ ନାହିଁ । ଭଗବାନଙ୍କ ନାମ ନେବା ପୂର୍ବରୁ, ତାଙ୍କ ନାମରେ ଦୀକ୍ଷା ନେବା ପୂର୍ବରୁ, ମନ-ଜମିଟିକୁ ତିଆରି କରିବାକୁ ପଡ଼ିବ । ମନ ଶୁଦ୍ଧ ନ ହେଲେ ସେଥିରେ କାର୍ଯ୍ୟ ହେବ ନାହିଁ । ସଦାଚାର, ବିନୟ, ଶ୍ରଦ୍ଧା ଏବଂ ଆଗ୍ରହର ସମ୍ମିଶ୍ରଣରେ ମନକୁ ପ୍ରସ୍ତୁତ କରିବାକୁ ପଡ଼ିବ । ଭଗବାନଙ୍କ ନାମ ପାଇଁ ଯଦି ସତରେ ଅନ୍ତରରେ ଆଗ୍ରହ ଆସିଥାଏ, ତା' ହେଲେ ଦୀକ୍ଷାର ପରିଣାମ ଆନନ୍ଦଦାୟକ ହୋଇଥାଏ । ଉପମା ଛଳରେ ଶ୍ରୀରାମକୃଷ୍ଣ କହିଛନ୍ତି, ଶାମୁକା ତା' ପାଟି ମେଲା କରି ସ୍ୱାତୀ ନକ୍ଷତ୍ରର ବୁନ୍ଦାଏ ଜଳ ପାଇଁ ଅପେକ୍ଷା କରି ରହିଥାଏ । ଯେମିତି ଜଳ ତା ପାଟିରେ ପଡ଼େ, ସଙ୍ଗେସଙ୍ଗେ ପାଟି ବନ୍ଦ କରି ସେ ପାଣି ତଳକୁ ଚାଲିଯାଏ । ସେଥିରୁ ସେ ମୁକ୍ତା ତିଆରି କରେ । ଏହି "ସ୍ୱାତୀ ନକ୍ଷତ୍ରର ବୁନ୍ଦାଏ ଜଳ" ହେଲା ମନ୍ତ୍ରଦୀକ୍ଷା । ମନ୍ତ୍ରଦୀକ୍ଷା ନେବା ପୂର୍ବରୁ ଏପରି ଆଗ୍ରହରେ ନିଜ ଅନ୍ତରକୁ ସେହି ଶାମୁକା ପରି ଉନ୍ମୁକ୍ତ କରି ତତ୍ତ୍ୱକୁ ଗ୍ରହଣ କରିବା ପାଇଁ ଅପେକ୍ଷା କରିବାକୁ ହୋଇଥାଏ । ତେବେ ଯାଇ ମନ୍ତ୍ର ଜୀବନରେ ଫଳଦାୟକ ହୋଇଥାଏ ।

ଶ୍ରଦ୍ଧା ଭକ୍ତି ବିନା ଦୀକ୍ଷାର ସାର୍ଥକତା ମିଳେ ନାହିଁ । ତେଣୁ ଆମକୁ ଶ୍ରଦ୍ଧାବାନ୍ ହେବାକୁ ପଡ଼ିବ । ଶ୍ରଦ୍ଧା ସହକାରେ ମନ୍ତ୍ରକୁ ଗ୍ରହଣ କରିବାକୁ ହେବ । ତେବେ ଯାଇ ସେ ବୀଜ ଅଙ୍କୁରୋଦ୍‌ଗମ ହୋଇ ସୁଶୋଭିତ ବୃକ୍ଷରେ ପରିଣତ ହେବ । ସୁତରାଂ ମନେ ରଖିବାକୁ ହେବ ଯେ ଦୀକ୍ଷା ନେବା ପୂର୍ବରୁ ପ୍ରସ୍ତୁତି ନିହାତି ପ୍ରୟୋଜନ । ବସ୍ତୁତଃ, ବିନା ପ୍ରସ୍ତୁତିରେ କୌଣସି କାର୍ଯ୍ୟ ହୁଏ ନାହିଁ । ଶାସ୍ତ୍ରରେ କୁହାଯାଇଛି, ଦୀକ୍ଷାର୍ଥୀ ଗୁରୁଙ୍କ ନିକଟରୁ ଆଦର୍ଶକୁ ଗ୍ରହଣ କରିବାକୁ ଚାହିଁଲେ, ବିନୀତ ଓ ସେବା ପରାୟଣ ହୋଇ, ଅହେତୁକ ଭକ୍ତିଦ୍ୱାରା ନିଜ ଜୀବନକୁ ଶୁଦ୍ଧ ଓ ପବିତ୍ର କରିବ । ଶାସ୍ତ୍ରରେ ବାରମ୍ବାର ଏହି ପ୍ରସ୍ତୁତିର କଥା କୁହାଯାଇଛି । କାରଣ, ଭଗବାନଙ୍କ ନାମ ଆମ ନିକଟରେ ଆସି ଉପସ୍ଥିତ ହେବା ମନୁଷ୍ୟ ଜୀବନର ଏକ ଅମୂଲ୍ୟ କ୍ଷଣ । ସେହି ନାମକୁ ଆମେ ସାଦରେ ହୃଦୟରେ ଗ୍ରହଣ କରି, ସେଥିରେ ମନକୁ ଏକାଗ୍ର କରି ସେହି ଶାମୁକା ପରି ଅତଳରେ ଯଦି ବୁଡ଼ି ଯାଇପାରୁ, ତା' ହେଲେ ଆମ ଭିତରେ ପରମରତ୍ନ ତିଆରି ହୋଇ ପାରିବ । ଏହି କଥାଟିକୁ ବିଶେଷ ଭାବରେ ମନେ ରଖିବାକୁ ହେବ । ଶ୍ରୀରାମକୃଷ୍ଣଙ୍କ ଉପଦେଶରୁ ଆମେ ଏହି ଶିକ୍ଷା ପାଇଥାଉ । ଗୀତାରେ କୁହାଯାଇଛି :

"ଇଦଂ ତେ ନାତପସ୍କାୟ ନାଭକ୍ତାୟ କଦାଚନ ।
ନ ଚାଶୁଶ୍ରୂଷବେ ବାଚ୍ୟଂ ନ ଚ ମାଂ ଯୋଽଭ୍ୟସୂୟତି ।" ୧୮। ୬୭

ଯିଏ ତପସ୍ୟାହୀନ, ଭକ୍ତିହୀନ, ଶୁଣିବାକୁ ଯାହାର ଆଗ୍ରହ ନାହିଁ, ସେପରି

ବ୍ୟକ୍ତିଙ୍କୁ ତୁମେ ଏହି ତତ୍ତ୍ୱ ଦେବ ନାହିଁ । ଏବଂ ଯିଏ ମନରେ ଭଗବାନଙ୍କ ପ୍ରତି ରାଗ ଓ ଦ୍ୱେଷ ପୋଷଣ କରିଛି ତାକୁ ମଧ୍ୟ ଦେବ ନାହିଁ ।

ଏମାନଙ୍କୁ କାହିଁକି ବଞ୍ଚିତ କରାଯାଉଛି ? ଯେହେତୁ ଏମାନଙ୍କର କ୍ଷେତ୍ର ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇନାହିଁ । ବାସ୍ତବରେ ଏଗୁଡ଼ିକ ହେଲା ପ୍ରସ୍ତୁତି । କ୍ଷେତ୍ର ପ୍ରସ୍ତୁତ ହେଲେ ଭଗବାନଙ୍କ ନାମ ପ୍ରତି ଅନୁରାଗ ଆସେ । ଦୀକ୍ଷାପ୍ରାର୍ଥୀ ତଥା ଦୀକ୍ଷିତ— ସମସ୍ତଙ୍କ ପାଇଁ ଏହା ବିଶେଷ ଭାବରେ ପ୍ରଯୋଜ୍ୟ । ତେଣୁ ଶାସ୍ତ୍ରରେ କୁହାଯାଇଛି— ବିନୟୀ ହେବ, ସେବା ପରାୟଣ ହେବ ।

ଜୀବନକୁ ଯଥାସାଧ୍ୟ ଶୁଦ୍ଧ ପବିତ୍ର କରିବାକୁ ହେବ । ଅନେକେ ମନେ କରନ୍ତି, ଦୀକ୍ଷା ନେଲେ ସେମାନଙ୍କ ଦେହ-ମନ ଆପେ ଆପେ ଶୁଦ୍ଧ ହୋଇଯାଏ । କିନ୍ତୁ ଏହା ଏକ ଭ୍ରାନ୍ତ ଧାରଣା । ଦୀକ୍ଷାକୁ ଗ୍ରହଣ କରିବା ପାଇଁ ଆମ ହୃଦୟକୁ ଆଗରୁ ନିର୍ମଳ କରି ରଖିବା ଦରକାର । ଭଗବାନଙ୍କୁ ପ୍ରତିଷ୍ଠା କରିବାକୁ ହେଲେ ମନ୍ଦିର ଚାରିପଟ ଭଲକରି ସଫା କରିବାକୁ ହୁଏ । ତେବେ ଯାଇ ସେଠାରେ ଭଗବାନଙ୍କୁ ପ୍ରତିଷ୍ଠା କରାଯାଏ । ମନ୍ତ୍ରଗ୍ରହଣ କରିବା ଅର୍ଥ ଭଗବାନଙ୍କୁ ପ୍ରତିଷ୍ଠା କରିବା । ଆଉ ତା'ର ପାଇଁ ଏତେ ସବୁ ପ୍ରସ୍ତୁତି । ଏହି ପ୍ରସ୍ତୁତି ପର୍ବଟିକୁ ଉପେକ୍ଷା କଲେ, ଆମେ ଅନ୍ତରରେ ଭଗବାନଙ୍କୁ ପ୍ରତିଷ୍ଠିତ କରିପାରିବା ନାହିଁ । ଏହି କଥାଟିକୁ ବିଶେଷ ଭାବରେ ମନେ ରଖିବା ଦରକାର ।

ଆମେ ଛୋଟ ପିଲାମାନଙ୍କୁ ଦୀକ୍ଷା ଦେବାକୁ ଚାହୁଁନା । ଅନେକ ସମୟରେ ଭକ୍ତମାନେ ଅତି ଆଗ୍ରହ ସହକାରେ ସେମାନଙ୍କର ଦଶ-ବାର ବର୍ଷର ବା ଆହୁରି କମ୍‌ବୟସ୍କ ପିଲାମାନଙ୍କୁ ଦୀକ୍ଷା ଦେବାପାଇଁ ଅନୁରୋଧ କରିଥାଆନ୍ତି । ଆମେ 'ମନା' କଲେ ସେମାନେ ଦୁଃଖିତ ହୋଇଥାନ୍ତି । ସେମାନେ ବାରମ୍ବାର ଅନୁରୋଧ କରନ୍ତି । ଦୀକ୍ଷାର ପ୍ରକୃତ ଉଦ୍ଦେଶ୍ୟ ସେମାନେ ବୁଝି ପାରନ୍ତି ନାହିଁ । ଏହି ସାନ ପିଲାମାନେ କଣ ସତରେ ଦୀକ୍ଷା ପାଇଁ ପ୍ରସ୍ତୁତ ? ସେମାନଙ୍କ ମନ କଣ ଏଥିପାଇଁ ପ୍ରସ୍ତୁତ ? ଏ ସବୁହେଲା 'ଦୀକ୍ଷା, ଦୀକ୍ଷା' ପିଲାଖେଳ ଖେଳିବାର ଅଝଟ ପଣିଆ । ଅନେକେ ହୁଏତ ଆନ୍ତରିକତା ସହ ଆମକୁ ଅନୁରୋଧ କରିଥାନ୍ତି । ତେବେ ଦୀକ୍ଷାର ମାହାତ୍ମ୍ୟ, ତାତ୍ପର୍ଯ୍ୟ ଓ ଗୁରୁତ୍ୱ ସମ୍ପର୍କରେ ସେମାନଙ୍କର ସମ୍ୟକ୍ ଧାରଣା ନ ଥାଏ ବୋଲି ଏପରି ଅଝଟ ହୋଇଥାନ୍ତି । ଦୀକ୍ଷା ନେବା ପାଇଁ ଏକ ଅନୁକୂଳ ସମୟ ରହିଛି । ଯେତେବେଳେ ମନ ଦୀକ୍ଷା ନେବାପାଇଁ ବ୍ୟାକୁଳ ହୁଏ, ସେତେବେଳେ ମନ୍ତ୍ର ଗ୍ରହଣ କରିବାର ସମୟ ଆସିଛି ବୋଲି ବୁଝି ହୁଏ । ଏସବୁ କଥା ମନେ ରଖିଲେ ଉପକାର ମିଳିଥାଏ ।

ମନେ ରଖିବାକୁ ହେବ ଯେ, ଦୀକ୍ଷା ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ସୁତରାଂ ଦୀକ୍ଷା ବିଷୟଟିକୁ ଅତି ଗୁରୁତ୍ୱ ସହକାରେ ନେବାକୁ ପଡ଼ିବ । ଏହି କଥା

ମନେ ରଖିବା ଦରକାର—ଦୀକ୍ଷା ଯେପରି ଆମର ଏକ 'ଷ୍ଟାଟସ୍ ସିମ୍ବଲ୍'ରେ ପରିଣତ ନ ହୁଏ ବା ଦୀକ୍ଷାକୁ ଯେପରି 'ଷ୍ଟାଟସ୍' ର ମାଧ୍ୟମ ହିସାବରେ ଗ୍ରହଣ କରା ନ ହୁଏ । ଦୀକ୍ଷା ହେଲା ଭଗବାନ ଲାଭ କରିବାର ଏକ ମାଧ୍ୟମ । ଯେଉଁମାନେ ଦୀକ୍ଷା ନେବାକୁ ଆସନ୍ତି ସେମାନଙ୍କ ଭିତରେ ଗାମ୍ଭୀର୍ଯ୍ୟ ଥିବା ଦରକାର । ଦୀକ୍ଷା ଯେ ଜୀବନର ଏକ ବିଶେଷ ମୁହୂର୍ତ୍ତ, ତାହାମଧ ମନେ ରଖିବା ଦରକାର । ଦୀକ୍ଷାବେଳେ ହୁଏତ ଗୁରୁ କିଛି ଉପଦେଶ ଦେଉଛନ୍ତି, ଯାହାକି ଦୀକ୍ଷାର୍ଥୀଙ୍କର ଶୁଣିବା ନିହାତି ପ୍ରୟୋଜନ, ହେଲେ ସେମାନଙ୍କର ସେପଟେ ଆଦୌ ମନ ନଥାଏ । ସେତେବେଳେ ସେମାନେ ଅନ୍ୟକଥା ଭାବୁଥାନ୍ତି । ଏଥିରୁ ବୁଝି ହୁଏ ଯେ, ଦୀକ୍ଷାର ଗୁରୁତ୍ୱ ସମ୍ପର୍କରେ ସେମାନଙ୍କର ଧାରଣା ହୋଇନାହିଁ । ଅନେକ ସମୟରେ ଆମେ ନାନା ପ୍ରତିକୂଳ ପରିବେଶ ଭିତରେ ଗତି କରିବାକୁ ବାଧ ହୋଇଥାଉ । ସେଗୁଡ଼ିକୁ ଆମକୁ ଦୂର କରିବାକୁ ପଡ଼ିବ । କିନ୍ତୁ ଏଗୁଡ଼ିକୁ ଦୂର କରିବାର ଶକ୍ତି ଓ ମାନସିକତା ଆମେ କେଉଁଠାରୁ ଲାଭ କରିବା ? ଯଦି ଆମେ ସମ୍ପୂର୍ଣ୍ଣ ଭାବରେ ପ୍ରସ୍ତୁତ ହୋଇ ଦୀକ୍ଷା ଗ୍ରହଣ କରିପାରୁ, ତେବେ ସେ ଦୀକ୍ଷା ହିଁ ଆମକୁ ଶକ୍ତି ଯୋଗାଇବ ।

ଏହି ପ୍ରସଙ୍ଗରେ ଆଉ ଗୋଟିଏ କଥା ମନେରଖିବାକୁ ପଡ଼ିବ । ଦୀକ୍ଷା ସହିତ ଆମର ଆଚରଣ ମଧ ଆମ ଦୀକ୍ଷା ଅନୁସାରେ ହେବା ବାଞ୍ଛନୀୟ । ମୁଁ ଦୀକ୍ଷା ବେଳେ ପାଞ୍ଚଟି ଆଚରଣ କଥା କହିଥାଏ । କଥା ଗୁଡ଼ିକ ଆଦୌ ଗୋପନୀୟ ନୁହେଁ । ଏହା ସମସ୍ତଙ୍କର ଜାଣିବା ପ୍ରୟୋଜନ । ଆଚରଣ ଯଦି ଶୁଦ୍ଧ ନ ହୁଏ ତା'ହେଲେ କେହି ଭଗବାନଙ୍କ ଦିଗକୁ ଆଗେଇ ପାରିବେ ନାହିଁ । ଭଗବାନଙ୍କ ଦିଗକୁ ଆଗେଇବାକୁ ହେଲେ ଶୁଦ୍ଧ ଆଚରଣ ଆବଶ୍ୟକ । ଆମେ ପ୍ରାୟ ଏକଥା ଶୁଣୁ ଯେ, ଆମର ଆହାର ଶୁଦ୍ଧ ହେବା ଦରକାର । 'ଶୁଦ୍ଧ ଆହାର' କହିଲେ ଆମେ କଣ ବୁଝୁ ? ଆହାରରେ ଯଥେଷ୍ଟ ଘିଅ ପଡ଼ିଥିବ ? 'ଶୁଦ୍ଧ ଆହାର' ମାନେ ସାତ୍ତ୍ୱିକ ଆହାର ଯାହାକି ଶରୀର ପାଇଁ ଉପଯୋଗୀ । ଶାସ୍ତ୍ରରେ ବର୍ଣ୍ଣନା ଅଛି—ଯାହା ଶରୀର ଓ ମନ ପାଇଁ ଉପଯୋଗୀ, ତାକୁ ପରିମିତ ରୂପରେ ଗ୍ରହଣ କରିବାକୁ ହେବ । ଅର୍ଥାତ୍ ଆମେ ଖାଦ୍ୟକୁ, ଲୋଭ ପରବଶରେ ଖାଇବା ନାହିଁ । ଆହାର ଆମ ଶରୀର-ମନକୁ ପୁଷ୍ଟ କରିବ ଏବଂ ସେହି ପୁଷ୍ଟ ଶରୀର ମନକୁ ଆମେ ଭଗବାନଙ୍କ ଚିନ୍ତାରେ ବ୍ୟୟ କରିବୁ । ଏହି ଭାବନାରେ ଆମେ ଖାଦ୍ୟ ଗ୍ରହଣ କରିବୁ । ଏହାକୁ ଖାଇବି, ତାହା ଖାଇବି ନାହିଁ, ଏଗୁଡ଼ିକ 'ଆହାର ଶୁଦ୍ଧି'ର ବିଷୟ ନୁହେଁ । 'ଆହାର ଶୁଦ୍ଧି' ହେଲା ପରିମିତ ପରିମାଣରେ ଏପରି ବସ୍ତୁ ଗ୍ରହଣ କରିବା, ଯାହା ଆମ ଦେହ-ମନକୁ ପୁଷ୍ଟ କରିବ ।

ସାଧାରଣ ଆହାର ଶୁଦ୍ଧି ଅପେକ୍ଷା ବଡ଼ କଥା ହେଲା ଆଚରଣ ଶୁଦ୍ଧି । ଆଚରଣ ଶୁଦ୍ଧିର ପାଞ୍ଚଟି କଥା ଆମେ ଉତ୍‌ଥାପନ କରିବା । (୧) ଆମେ ସମସ୍ତଙ୍କର ମଙ୍ଗଳ

ଚିନ୍ତା କରିବା । ଆମେ ସମସ୍ତଙ୍କ ସହିତ ଏପରି ବ୍ୟବହାର କରିବା ଯେପରି କାହାରି କିଛି ଅନିଷ୍ଟ ନ ହୁଏ ବା କାହାରି ମନରେ କି ଶରୀରରେ ଆଘାତ ନ ଲାଗେ । ଶାସ୍ତ୍ର ଅହିଂସାର କଥା କହେ । 'ଅହିଂସା' ମାନେ ଶରୀରରେ ବା ମନରେ କାହାରିକୁ ଆଘାତ ନ ଦେବା, କାହାରି ଅନିଷ୍ଟ ଚିନ୍ତା ନ କରିବା ବା ଅନିଷ୍ଟ ନ କରିବା । ଏହି ଆଚରଣ କାୟମନୋବାକ୍ୟରେ ପାଳନ କରିବାକୁ ହେବ । ଅର୍ଥାତ୍ କଥାରେ, କର୍ମରେ ଓ ଚିନ୍ତାରେ ଏହାକୁ ମାନିବାକୁ ହେବ । (୨) ସର୍ବଦା ସତ୍ୟକୁ ଧରି ରହିବାକୁ ହେବ । ସତ୍ୟକୁ ଏପରି ଭାବରେ ଧରିବାକୁ ହେବ ଯେ, କୌଣସି କାରଣରୁ ଆମେ ଯେପରି ସତ୍ୟଠାରୁ ବିଚ୍ୟୁତ ହେବୁ ନାହିଁ; କେବେବି ମିଥ୍ୟାର ଆଶ୍ରୟ ନେବୁ ନାହିଁ । କାହାରିକୁ ବଚନ ଦେଇ ଯେପରି ସେ ବଚନ ରକ୍ଷା କରିପାରୁ । ଶ୍ରୀରାମକୃଷ୍ଣ କହିଛନ୍ତି, ''ଯିଏ ସତ୍ୟକୁ ଧରିଥାଏ, ସେ ଭଗବାନଙ୍କ କୋଳରେ ବସିଥାଏ ।'' ପୁଣି ସେ କହିଛନ୍ତି, ''ସତ୍ୟ କଥା ହେଉଛି କଳିର ତପସ୍ୟା ।'' ସତ୍ୟ ପାଳନ କରିବା ଆଦୌ ସହଜ କଥା ନୁହେଁ । ସତ୍ୟ ପାଳନ କରିବାକୁ ହେଲେ ଆମକୁ ଜୀବନରେ ଅନେକ ତ୍ୟାଗ ସ୍ୱୀକାର କରିବାକୁ ହୁଏ । ସତ୍ୟ ପାଳନ କରିବା ଏତେ ସହଜ କଥା ନୁହେଁ, ତଥାପି ଏହା ଆମର ଆଦର୍ଶ । ଏହା ଯେପରି ଭୁଲି ନ ଯାଉ । (୩) ଆମେ କାହାରିକୁ ଠକାଇବା ଉଚିତ ନୁହେଁ । କାହାରିକୁ ଠକେଇ କିଛି ଗ୍ରହଣ କରିବା ଉଚିତ ନୁହେଁ । ଆମର ଯାହା ନ୍ୟାଯ୍ୟ ପ୍ରାପ୍ୟ, ସେତିକି ମାତ୍ର ଆମେ ଗ୍ରହଣ କରିବା । ଏହା ହେଉଛି ଲୋକଙ୍କ ସହିତ ବ୍ୟବହାରର ସଦାଚାର ପରାୟଣତା । ଏହା ସାଧନା ପଥରେ ଏକ ସହାୟକ ଅଙ୍ଗ । (୪) ସବୁ ଇନ୍ଦ୍ରିୟକୁ ଆମ ଆୟତ୍ତରେ ରଖିବାକୁ ହେବ । ଆମେ ଯେପରି ସେମାନଙ୍କ ଦ୍ୱାରା ଚାଳିତ ନ ହେଉ । ସମସ୍ତ ଇନ୍ଦ୍ରିୟମାନଙ୍କର ସଂଯମ ଦରକାର । ଏହା ସାଧନା ପଥରେ ଏକାନ୍ତ ପ୍ରୟୋଜନ । (୫) ଭଗବାନଙ୍କୁ ଲାଭ କରିବା ପାଇଁ, ତାଙ୍କୁ ଚିନ୍ତା କରିବା ପାଇଁ ଆମେ ଜୀବନ ଧାରଣ କରିଛୁ । ଆମ ଜୀବନଯାପନ ସହଜ, ସରଳ ଓ ସ୍ୱାଭାବିକ ହେବା ଦରକାର । ବିଳାସିତା ପ୍ରତି ଆମର ଯେପରି ଦୃଷ୍ଟି ନ ରହେ । ତା' ଅର୍ଥ ଏହା ନୁହେଁ ଯେ, ସମସ୍ତେ ଭିକାରିଙ୍କ ପରି ପୋଷାକ ପିନ୍ଧିବେ ବା ଦୀନ-ହୀନ ଭାବରେ ରହିବେ । ଆମର ଲକ୍ଷ୍ୟ ହେବା ଉଚିତ—କେତେ କମ୍ ଜିନିଷରେ ଆମେ ସନ୍ତୁଷ୍ଟ ରହିପାରିବା । ଆମେ ନିର୍ଲୋଭୀ ହେବା ପ୍ରୟୋଜନ । ଯିଏ ଏକହଜାର ଟଙ୍କା ଆୟ କରେ, ସିଏ ଦଶହଜାର ଟଙ୍କା କଥା ଭାବୁଛି । ଦଶ ହଜାର ଟଙ୍କାବାଲା ଲକ୍ଷେ ଟଙ୍କା କଥା ଚିନ୍ତା କରୁଛି । ଲକ୍ଷେ ଟଙ୍କା ଯାହାର ଆୟ, ସିଏ ଭାବୁଛି କେବେ କୋଟିଏ ଟଙ୍କା ହେବ । ଏପରି ଭାବରେ ଆମର କାମନା କ୍ରମାଗତ ଭାବରେ ବଢ଼ିଚାଲିଛି । ଏହି କ୍ରମବର୍ଦ୍ଧମାନ କାମନା ଆମ ମନକୁ ସର୍ବଦା ଅସ୍ଥିର କରେ । ସେଥିପାଇଁ ମନକୁ ସଂଯତ କରିବାକୁ କୁହାଯାଏ ।

ପୃଥିବୀର ସର୍ବ ଐଶ୍ୱର୍ଯ୍ୟ ପାଇ ସୁଦ୍ଧା କାହାରି ମନ ଶାନ୍ତ ହୁଏ ନାହିଁ । କାରଣ, ଏହା ହେଉଛି ମନର ସ୍ୱଭାବ । ଯିଏ ଯେତେ ପାଏ ସିଏ ସେତେ ଅଧିକ ମାଗେ । ଅଗ୍ନିରେ ଘିଅ ଢାଳିଲେ ଅଗ୍ନି ଯେପରି ଅଧିକ ଜୋର୍‌ରେ ଜଳିଉଠେ, ସେହିପରି ଆମେ ଯେତେ ଅଧିକ ଭୋଗ୍ୟ ବସ୍ତୁ ଉପଭୋଗ କରୁ, ସେତିକି ଅଧିକ ଆମର ବାସନା ବୃଦ୍ଧି ହୋଇଥାଏ । ମଣିଷ ମନକୁ ଅଶାନ୍ତ, ବିଭ୍ରାନ୍ତ କରିବାର ମୁଖ୍ୟ କାରଣ ହେଲା ଏହି କାମନା ।

ଅନେକେ କହନ୍ତି, ଆମେ ଶାନ୍ତି ଚାହୁଁ । ମୁଁ କହେ, ମନରେ କୌଣସି ବାସନା ରଖ ନାହିଁ, ତା'ହେଲେ ଯାଇ ଶାନ୍ତି ପାଇବ । ବାସନା ରହିଲେ ହିଁ ଅଶାନ୍ତି ଆସିବ । କାରଣ, ଜଗତରେ ଆମେ ଏତେ ରକମର ବାସନା ପୋଷଣ କରୁ ଯେ, ତାକୁ ପୂର୍ଣ୍ଣ କରିବା ଆଦୌ ସମ୍ଭବ ନୁହେଁ । ଫଳରେ ମନରେ ଶାନ୍ତି ଆସେ ନାହିଁ । ଆମ ମନରେ ଥିବା କାମନା ଗୁଡ଼ିକ ପୂରଣ ହେଉ ନଥିବାରୁ ଆମେ ଶାନ୍ତି ପାଉନାହୁଁ । ଏହି କାମନା ଗୁଡ଼ିକ ପୂରଣ ହେବା ମଧ୍ୟ ସହଜ ନୁହେଁ । ଗୋଟିଏ କାମନା ପୂରଣ କରିବାକୁ ଗଲେ ଆହୁରି ଦଶଟା କାମନା ଉତ୍ପନ୍ନ ହୁଏ । ଖାଇ-ପିନ୍ଧି ଚଳିପାରିଲା ଲୋକଟିଏ ଭାବୁଛି—କଣ ଏମିତି ଖାଲି ଖାଇବା-ପିନ୍ଧିବାଟା ହିଁ ଜୀବନ ? ଗାଡ଼ିଟିଏ କରିପାରିବି ନାହିଁ ! ଆମେ ଜୀବନକୁ କିପରି ଉପଭୋଗ କରିବୁ ? ପୁଣି ଯାହାର ସବୁ ଭୋଗ୍ୟ ବସ୍ତୁ ଅଛି, ସେ ହୁଏତ ରୋଗୀ । ସବୁ ଥାଇ ସୁଦ୍ଧା ସିଏ କିଛି ବି ଭୋଗ କରିପାରୁ ନାହିଁ । ଫଳରେ ତାର କାମନା ପୂରଣ ହେଉନାହିଁ । ରାଜା ଯଯାତି ସକଳ ଐଶ୍ୱର୍ଯ୍ୟ ଭୋଗ କରିସାରି ଯୌବନ ବିତିଗଲା ପରେ ଦେଖିଲେ ଯେ, ଆଉ ଭୋଗ କରିବାର ସାମର୍ଥ୍ୟ ନାହିଁ । କିନ୍ତୁ ପ୍ରବଳ ଭୋଗ କରିବାର ବାସନା ରହିଛି । କ'ଣ କରିବେ ଭାବି ନ ପାରି ସିଏ ଭଗବାନଙ୍କ ନିକଟରେ ପ୍ରାର୍ଥନା କଲେ । ଭଗବାନ କହିଲେ, ‘‘ତୁମ ଯୌବନ ତ ସରିଯାଇଛି । ତୁମ ପୁଅମାନଙ୍କୁ ପଚାରି ଦେଖ, ଯଦି ସେମାନଙ୍କ ଭିତରୁ କେହି ତାଙ୍କ ଯୌବନ ଉଦ୍ଧାର ଦିଏ, ତେବେ ତୁମେ ଆହୁରି ଭୋଗ କରିପାରିବ ।’’ ରାଜା ଯଯାତି ସବୁ ପୁଅମାନଙ୍କୁ ଡାକି ପଚାରିଲେ । ତାଙ୍କ କନିଷ୍ଠ ପୁତ୍ର ପୁରୁ ରାଜି ହେଲେ । କିନ୍ତୁ ଅନ୍ୟ ପୁଅମାନେ କେହି ରାଜି ହେଲେ ନାହିଁ । ରାଜା ଯଯାତି ପୁଣି ତାଙ୍କ ଭୋଗରେ ପ୍ରବୃତ୍ତି ହେଲେ । ନିଜ ଯୌବନ ସହ ପୁତ୍ରର ଯୌବନକୁ ମଧ୍ୟ ଭୋଗ କଲାପରେ ତାଙ୍କର ମନେ ହେଲା, ବାସନା ନ କମି ବରଂ କ୍ରମଶଃ ବଢ଼ି ବଢ଼ି ଚାଲିଛି । ଯେପରି ଅଗ୍ନିରେ ଘିଅ ଢାଳିଲେ, ଅଗ୍ନି ଆହୁରି ଅଧିକ ଜୋର୍‌ରେ ଜଳିଉଠେ, ସେପରି ଭୋଗ୍ୟବସ୍ତୁ ଆମ କାମନାକୁ କେବଳ ବଢ଼ାଇଦିଏ, ଫଳରେ ଅଶାନ୍ତି ଆହୁରି ଶତ ଗୁଣରେ ବଢ଼ିଚାଲେ ।

ଶାନ୍ତି ପାଇବା ପାଇଁ ଆମେ ଭଗବାନଙ୍କୁ ପ୍ରାର୍ଥନା କରୁ । ପ୍ରକୃତରେ ଆମେ

ଭଗବାନଙ୍କୁ କେବଳ ଭୋଗର ଉପକରଣ ସଂଗ୍ରହ କରିବା ସକାଶେ ପ୍ରାର୍ଥନା କରିଥାଉ । ଭଗବାନ ଯଦି ଆମକୁ ପ୍ରଚୁର ଐଶ୍ୱର୍ଯ୍ୟ ଦିଅନ୍ତି, ଆଉ ଆମେ ଯଦି ଆତ୍ମୀୟ-ସ୍ୱଜନଙ୍କୁ ନେଇ ବେଶ୍ ସୁଖରେ କାଳାତିପାତ କରିପାରୁ, ତା'ହେଲେ ଭଗବାନ ଭାରି ଭଲ । ଆଉ ଯଦି ଆମ ଜୀବନରେ ବଜ୍ରାଘାତ ପରି ପରିସ୍ଥିତି ଉପୁଜେ, ତେବେ ଭଗବାନ ଖରାପ! ଆମେ ଆମର କାମନା ପୂରଣ କରିବା ସକାଶେ ଭଗବାନଙ୍କୁ ପ୍ରାର୍ଥନା କରୁ ଏବଂ ତାହା ନ ହେଲେ ଭଗବାନଙ୍କ ଉପରୁ ଆମ ଭକ୍ତି ଉଭେଇଯାଏ । ଭଗବାନଙ୍କୁ ଏପରି ଭାବେ ପ୍ରାର୍ଥନା କଲେ ଶାନ୍ତି ମିଳେ ନାହିଁ । ତାଙ୍କ ଚରଣରେ ଆତ୍ମସମର୍ପଣ କଲେ ଯାଇ ଶାନ୍ତି ମିଳିବ । ସୁଖ କି ଦୁଃଖ, ଭଲ କି ମନ୍ଦ-ସବୁ ଅବସ୍ଥାରେ ତାଙ୍କରି ଇଚ୍ଛାକୁ ହିଁ ଆମ ଜୀବନରେ କଲ୍ୟାଣକାରୀ ବୋଲି ଗ୍ରହଣ କରିବାକୁ ହେବ । ସୁଖ ଦୁଃଖକୁ ତାଙ୍କ ଦାନ ଭାବି ମୁଣ୍ଡ ପାତି ନେବାକୁ ହେବ । ମୃତ୍ୟୁକୁ କେବଳ ସହିବା ନୁହେଁ; ତାକୁ ସ୍ୱୀକାର କରି ବରଣ କରିବା ଏବଂ ସେଥିରେ କ୍ଷୁବ୍ଧ ନ ହେବା—ଏହି ଭାବ ଶରଣାଗତିରୁ ଆସିଥାଏ । ଶାସ୍ତ୍ର ଏହା କହନ୍ତି । ଶରଣାଗତି ହେଲେ ଶାନ୍ତି ମିଳେ । ଯିଏ ଭଗବାନଙ୍କୁ ଚାହେଁ, ସିଏ ପୃଥିବୀର ସମସ୍ତ ସୁଖକୁ ତୁଚ୍ଛ ମଣେ । ଭଗବାନଙ୍କୁ ଡାକୁ ଡାକୁ ମନ ତାଙ୍କ ପ୍ରତି ଏପରି ଏକାଗ୍ର ହୋଇଯାଏ ଯେ, ଅନ୍ୟ ଜିନିଷ ପ୍ରତି ଆକର୍ଷଣ କମିଯାଏ । ଯେପରି ଜଣେ ଯଦି ଅମୂଲ୍ୟ ପରଶ-ମଣି ପାଏ, ତା'ହେଲେ କ୍ଷୁଦ୍ର ଜିନିଷ ପ୍ରତି ଆଉ ତା'ର ଦୃଷ୍ଟି ରହେ ନାହିଁ । କାରଣ ଅନ୍ୟାନ୍ୟ ଭୋଗ୍ୟ ଉପକରଣ ତାକୁ ତୁଚ୍ଛ ବୋଧ ହୁଏ । ରବୀନ୍ଦ୍ରନାଥ ତାଙ୍କର 'ସ୍ପର୍ଶମଣି' କବିତାରେ ଅତି ସୁନ୍ଦର ଘଟଣାଟିଏ ଉଲ୍ଲେଖ କରିଛନ୍ତି । ଧନ ଦୌଲତ ପାଇବା ଆଶାରେ ଜଣେ ଦରିଦ୍ର ବ୍ରାହ୍ମଣ ଶିବଙ୍କୁ ଆରାଧନା କରୁଥିଲା । ଶିବ କହିଲେ, "ବୃନ୍ଦାବନକୁ ଯାଅ, ସେଠାରେ ସନାତନ ଗୋସ୍ୱାମୀ ଅଛନ୍ତି । ତାଙ୍କ ନିକଟରୁ ଧନଲାଭର ଉପାୟ ଶିକ୍ଷା କର ।" ବ୍ରାହ୍ମଣ ନିଜ ଦାରିଦ୍ର୍ୟ ଦୂର କରିବା ଆଶାରେ ସନାତନ ଗୋସ୍ୱାମୀଙ୍କ ନିକଟରେ ଆସି ଉପସ୍ଥିତ ହେଲା । ସନାତନ ଗୋସ୍ୱାମୀ କହିଲେ, "ନଈ କୂଳରେ ସେହି ବାଲି ଭିତରେ ସ୍ପର୍ଶମଣି ପୋତା ହୋଇ ରହିଛି । ତାକୁ ନେଇଯାଅ, ତୁମର ଅଭାବ ଦୂର ହେବ । ତୁମେ ପ୍ରଭୂତ ସଂପଦର ଅଧିକାରୀ ହେବ ।" ବ୍ରାହ୍ମଣ ବାଲି ଖୋଳି ସେହି ସ୍ପର୍ଶମଣିକୁ ପାଇଲା । ସ୍ପର୍ଶମଣିକୁ ସ୍ପର୍ଶ କରିବା ମାତ୍ରେ ବ୍ରାହ୍ମଣର ଲୁହା ଡେଉଁରିଆ ସୁନା ପାଲଟିଗଲା । ଏଥିରେ ଆଶ୍ଚର୍ଯ୍ୟ ହୋଇ ବ୍ରାହ୍ମଣ ଭାବିଲା ସନାତନ ଗୋସ୍ୱାମୀଙ୍କ ନିକଟରେ ଏପରି ଅମୂଲ୍ୟ ରତ୍ନ ଥାଇ ମଧ ସେ କେତେ ନିର୍ବିକାର । ସେହି ବ୍ରାହ୍ମଣଟି ସନାତନ ଗୋସ୍ୱାମୀଙ୍କ ନିକଟକୁ ଆସି କହିଲା, "ଯେଉଁ ଅମୂଲ୍ୟ ସଂପଦରେ ଧନୀ ହୋଇ ଆପଣ ଏହି ମଣିକୁ 'ମଣି' ବୋଲି ଭାବୁନାହାନ୍ତି—ତାହାର କିଛି ଅଂଶ ମୁଁ ଆପଣଙ୍କ ନିକଟରୁ ପ୍ରାର୍ଥନା କରୁଛି ।"

ଏହା କହି ବ୍ରାହ୍ମଣ ସେହି ସ୍ପର୍ଶମଣିକୁ ନଈରେ ଫିଙ୍ଗିଦେଲା ।

ଭାଗବତରେ କୁହାଯାଇଛି :—

''ତ୍ରିଭୁବନ ବିଭବହେତ ବେଽପ୍ୟକୁଣ୍ଠ ସ୍ମୃତିରଜିତାତ୍ମସୁରାଦିଭିର୍ବିମୃଗ୍ୟାତ୍ ।
ନ ଚଳତି ଭଗବତ୍ ପଦାରବିନ୍ଦାଲ୍ଲବ ନିମିଷାର୍ଧମପି ଯଃ ସ ବୈଷ୍ଣବାଗ୍ର୍ୟଃ ।।'' ୧୧/୨/୫୩

ସେ ହିଁ ଶ୍ରେଷ୍ଠ ଭକ୍ତ, ଯାହାଙ୍କ ନିକଟରେ ତ୍ରିଭୁବନର ସମସ୍ତ ଐଶ୍ୱର୍ଯ୍ୟ ଉପସ୍ଥିତ ହେଲେ ସୁଦ୍ଧା, ଐଶ୍ୱର୍ଯ୍ୟର ଆକର୍ଷଣରେ ତାଙ୍କ ମନ ମୁହୂର୍ତ୍ତକ ପାଇଁ ଭଗବାନଙ୍କ ଚରଣରୁ ଭ୍ରଷ୍ଟ ହୁଏ ନାହିଁ । ଭଗବାନଙ୍କୁ ପାଇ ସିଏ ଏତେ ବିଭୋର ହୋଇଯାନ୍ତି ଯେ, ସଂସାରର ସକଳ ଐଶ୍ୱର୍ଯ୍ୟ, ସକଳ ବିଭବ ତାଙ୍କ ନିକଟରେ ତୁଚ୍ଛ ହୋଇଯାଏ ।

ଜୀବନରେ ଜଳି–ପୋଡ଼ି ବିରକ୍ତ ହୋଇ ନୁହେଁ; ବରଂ ଭଗବାନଙ୍କୁ ଭଲପାଇ ଜଗତର ସବୁ କିଛିକୁ ତୁଚ୍ଛ ମଣିବା ଦରକାର । ଭଗବାନଙ୍କ ପ୍ରତି ଆକର୍ଷଣ ଏତେ ଦୁର୍ବାର ଯେ ଅନ୍ୟ ସବୁକିଛି ତୁଚ୍ଛ ଲାଗେ । ଶ୍ରୀରାମକୃଷ୍ଣ କହିଛନ୍ତି, ଚୁମ୍ବକ ଲୁହାକୁ ଟାଣେ । ଗୋଟିଏ ସ୍ଥାନରେ ଖଣ୍ଡେ ଲୁହା ଅଛି, ଆଉ ଦୁଇଟି ଚୁମ୍ବକ ନିକଟରେ ଅଛି । ଚୁମ୍ବକ ଭିତରେ ଗୋଟିଏ ବଡ଼ ଅନ୍ୟଟି ସାନ । କେଉଁ ଚୁମ୍ବକଟି ଲୁହାକୁ ଟାଣିବ ? ବଡ଼ ଚୁମ୍ବକଟି ହିଁ ଲୁହାକୁ ଟାଣିବ । ଭଗବାନ ହେଉଛନ୍ତି ସବୁଠାରୁ ବଡ଼ ଚୁମ୍ବକ । ତାଙ୍କ ଆକର୍ଷଣ ଦୁର୍ବାର । ତାଙ୍କ ଆକର୍ଷଣ ଯେତେବେଳେ ବୋଧ ହୁଏ, ସେତେବେଳେ ସଂସାରର ଅନ୍ୟ କୌଣସି ଜିନିଷ ଆଉ ମନକୁ ଆକୃଷ୍ଟ କରିପାରେ ନାହିଁ । ତାଙ୍କ ପାଦପଦ୍ମରେ ମନ ଲାଖି ରହେ । ଆମେ ଯେ ଭଗବତ୍ ପଥରେ ଅଗ୍ରସର ହେଉଛୁ, ଏହା ହେଲା ତାହାର ପରୀକ୍ଷା । ଯଦି ଭଗବାନଙ୍କ ସହିତ ସଂସାରର ସୁଖ–ସମୃଦ୍ଧି ମଧ୍ୟ ଚାହୁଁ, ତେବେ ଭଗବାନଙ୍କୁ ଚାହିଁବାଟା ଗୋଟିଏ ବିଳାସିତା ହେବ ।

ସାଧାରଣତଃ ମଣିଷ ଧନ–ଦୌଲତ ପାଇଁ ଭଗବାନଙ୍କୁ ଚାହେଁ । କେବଳ ତାହାପାଇଁ କେହି ଭଗବାନଙ୍କୁ ଚାହେଁ ନାହିଁ । ଆମର ଅସଲ କାମନା ହେଲା ଧନ–ସଂପଦ । ଆଉ ତାକୁ ପାଇବାର ଏକମାତ୍ର ଉପାୟ ଭଗବାନ ବୋଲି ଆମେ ଚିନ୍ତା କରୁ । ଯଦି ଏହି ଉପାୟ ଆମକୁ ଏସବୁ ଜିନିଷ ଦେଇ ନପାରେ ତେବେ ସେ ଉପାୟଟିକୁ ଆମେ ବର୍ଜନ କରିଦେବୁ । ଅର୍ଥାତ୍ ଭଗବାନଙ୍କୁ ଆମେ ବର୍ଜନ କରିଦେବୁ । ଭଗବାନ ଯେ ଆମକୁ ସର୍ବଦା ସୁଖ ଦେବେ ତାହା ହୋଇ ପାରେନା । ଦୁଃଖ, ଦାରିଦ୍ର୍ୟ, ଆପଦ, ବିପଦ ମଧ୍ୟ ତାଙ୍କ ନିକଟରୁ ଆସିଥାଏ । ମଣିଷ ସୁଖ ବେଳେ ତାଙ୍କୁ ଭୁଲିଯାଏ । ଦୁଃଖରେ ତାଙ୍କୁ ମନେ ପକାଏ । ଅନ୍ୟମାନେ ହୁଏତ ଦୁଃଖବେଳେ ମ୍ରିୟମାଣ ହୋଇ କେବଳ ହାହାକାର କରିଥାନ୍ତି, କିନ୍ତୁ ଭକ୍ତ ସେତେବେଳେ ଭଗବାନଙ୍କୁ ଆହୁରି ଜୋର କରି ଜାବୁଡ଼ି ଧରେ । ଦୁଃଖ ସମୟରେ ତାଙ୍କୁ ବେଶୀ ମନେ ପଡ଼େ । କୁନ୍ତୀଙ୍କ ଜୀବନଟା ଥିଲା ସଂପୂର୍ଣ୍ଣ ଦୁଃଖମୟ । ସ୍ୱାମୀଙ୍କ ସହିତ ବଣ ଜଙ୍ଗଲରେ

ବୁଲିଛନ୍ତି । ସ୍ୱାମୀଙ୍କ ମୃତ୍ୟୁ ପରେ ନାବାଳକ ପିଲାମାନଙ୍କୁ ନେଇ ସେ ଆସିଲେ ହସ୍ତୀନାପୁରକୁ । ରାଜ୍ୟ ଫେରି ପାଇଲା ପରେ କୌରବଙ୍କ ଚକ୍ରାନ୍ତରେ ରାଜ୍ୟରୁ ପାଣ୍ଡବମାନେ ପୁଣି ବିତାଡ଼ିତ ହେଲେ । ଭିକାରୀ ହୋଇ ସେମାନେ ମା'ଙ୍କୁ ସାଙ୍ଗରେ ନେଇ ଜଙ୍ଗଲରେ ଘୂରି ବୁଲିଲେ । କୁନ୍ତୀଙ୍କ ଜୀବନଟା କେବଳ ବିପଦ ଭିତରେ ହିଁ କଟିଛି । ତା'ପରେ ଆସିଲା ପାଣ୍ଡବମାନଙ୍କ ଦୀର୍ଘ ଅଜ୍ଞାତ ବନବାସ । ତା'ପରେ ହେଲା କୁରୁକ୍ଷେତ୍ର ଯୁଦ୍ଧ । ଯୁଦ୍ଧରେ ଜୟୀ ହେଲାପରେ କୃଷ୍ଣ ବିଦାୟ ନେବାକୁ ଆସିଛନ୍ତି କୁନ୍ତୀଙ୍କ ପାଖକୁ । କୁନ୍ତୀ ତାଙ୍କୁ କହିଛନ୍ତି, ''ହେ ଭଗବାନ, ସୁଖରେ ଥିଲାବେଳେ, ଆମେ ତୁମକୁ ଭୁଲିରହୁ । ଦୁଃଖ ସମୟରେ ହିଁ ତୁମକୁ ମନେ ପଡ଼େ । ସେଥିପାଇଁ ତୁମେ ମୋତେ ଦୁଃଖ ଦିଅ । ଯାହା ଫଳରେ ମୁଁ ତୁମକୁ ସର୍ବଦା ସ୍ମରଣ କରିପାରିବି ।'' ମନ ବହୁତ ବଡ଼ ହେଲେ ମଣିଷ ଭଗବାନଙ୍କ ନିକଟରୁ ଦୁଃଖ ମାଗିପାରେ । ଏହିପରି ଭାବରେ ଭଗବାନଙ୍କୁ ଚାହିଁବା ଆମ ଭିତରେ ବିରଳ ହେଲେ ସୁଦ୍ଧା, ଏହା ଯେ ଆମର ଆଦର୍ଶ, ତାହା ଯେପରି ଆମେ ଭୁଲି ନ ଯାଉ ।

ଆମେ କେବଳ ମୁହଁରେ 'ଭଗବାନ, ଭଗବାନ' କହୁ, କାର୍ଯ୍ୟରେ ପାର୍ଥିବ ବସ୍ତୁରେ ମତ୍ତ ହୋଇ ରହୁ । କେବଳ ତାଙ୍କୁ ହିଁ ଦରକାର, କାରଣ ସିଏ ହେଲେ ସର୍ବାବସ୍ଥାରେ ଆମର ପରମ କଲ୍ୟାଣମୟ, ଆମ ଜୀବନର ସର୍ବସ୍ୱ, ଆମର ଅନ୍ତରାତ୍ମା, ଆମର ପରମସ୍ୱରୂପ । ମଣିଷ ନିଜକୁ ବେଶୀ ଭଲ ପାଏ, ଅର୍ଥାତ୍ ତା' ଆତ୍ମାକୁ ହିଁ ଭଲ ପାଏ । ଆତ୍ମାର ପ୍ରୀତିକର ବୋଲି ଅନ୍ୟ ଜିନିଷକୁ ଭଲ ପାଏ । ଅର୍ଥାତ୍ ବାସ୍ତବରେ ମଣିଷ ଆତ୍ମାକୁ ବେଶୀ ଭଲ ପାଏ । ଏଥିପାଇଁ ଭଗବାନଙ୍କୁ କୁହାଯାଏ 'ଆତ୍ମାର ଆତ୍ମା' । ଆଉ ସେଥିପାଇଁ ଆମେ ତାଙ୍କୁ ଭଲ ପାଇବା । ଏହି ଭଲ ପାଇବାକୁ କୁହାଯାଏ 'ଅହୈତୁକୀ ଭକ୍ତି' । ଶ୍ରୀରାମକୃଷ୍ଣ ବାରମ୍ବାର ଏହି ଅହୈତୁକୀ ଭକ୍ତି କଥା ଉଲ୍ଲେଖ କରିଛନ୍ତି । ଏହି ଭକ୍ତିରେ ଭକ୍ତ ଭଗବାନଙ୍କ ନିକଟରେ ଅନ୍ୟ କିଛି ମାଗେ ନାହିଁ । କାରଣ, ତା'ର ଅନ୍ୟ କୌଣସି କାମନା ନଥାଏ । ଭଗବାନଙ୍କୁ ସେ ତା' ହୃଦୟର ଶ୍ରଦ୍ଧା, ପ୍ରେମ ନିବେଦନ କରି ତୃପ୍ତି ବୋଧ କରେ । ପ୍ରତିଦାନରେ ସିଏ କିଛି ବି ମାଗେନାହିଁ । ଏହି ଭକ୍ତିର ଆଦର୍ଶ ହେଲା ଶ୍ରୀରାମକୃଷ୍ଣଙ୍କ ଆଦର୍ଶ । ଆମ ପକ୍ଷରେ ହୁଏତ ଏତେ କରିବା ସମ୍ଭବ ନୁହେଁ । ତଥାପି ମନେ ରଖିବାକୁ ହେବ ଯେ ଭୋଗାକାଂକ୍ଷା, ବିଷୟ-ତୃଷ୍ଣା ଯେପରି ଆମ ଅନ୍ତରର ମୁଖ୍ୟ ବିନ୍ଦୁକୁ, ଆମ ଜୀବନର କେନ୍ଦ୍ରଟିକୁ ଭୁଲାଇ ନ ଦିଏ । ଅଳ୍ପ ବହୁତ ଆଶା-ଆକାଙ୍କ୍ଷା ତ ରହିବେ । ଦେହ ଓ ମନ ଭୋଗ କରିବାକୁ ଚାହିଁବ । ସେମାନେ ସେମାନଙ୍କ ସ୍ଥାନରେ ରହି ଭୋଗ କରନ୍ତୁ । କିନ୍ତୁ ତାହା ଯେପରି ଆମକୁ ଏପରି ଭାବରେ ଆଚ୍ଛନ୍ନ ନ କରୁ ଯେପରି ଆମେ ଭଗବାନଙ୍କୁ ଭୁଲି ଭୋଗ, ପାର୍ଥିବ ଐଶ୍ୱର୍ଯ୍ୟକୁ ହିଁ ଜୀବନର ସାର ମଣିବା ।

ଶ୍ରୀରାମକୃଷ୍ଣଙ୍କ ଉପଦେଶର ମୁଖ୍ୟ ସାର ହେଲା—ଆମେ ଭଗବାନଙ୍କ ନାମ କରିବା । କେତେ ହଜାର ଜପ, କେତେ ସମୟ ଧ୍ୟାନ କରିବା ଇତ୍ୟାଦି ଗୌଣ ବିଷୟ । କେହି ହୁଏତ ନିରାମିଷ ଖାଏ, କେହି ହୁଏତ ଏକ ବସ୍ତ୍ରରେ ଭଗବାନଙ୍କ ଲାଗି ତପସ୍ୟା କରେ । ଆନ୍ତରିକତା ନ ଥିଲେ ଏଗୁଡ଼ିକର କୌଣସି ମୂଲ୍ୟ ନାହିଁ । ଅସଲ କଥା ହେଲା, ଆମେ ଆମର ଅନ୍ତର ଦେଇ ଭଗବାନଙ୍କୁ ଭଲ ପାଇ ପାରୁଛନ୍ତି କି ନା ଦେଖିବାକୁ ହେବ । ଯଦି ଭଲ ପାଉ ତା'ହେଲେ ସଂସାରର ଅନ୍ୟ ସବୁ ଆକର୍ଷଣ ତୁଚ୍ଛ ହୋଇଯିବ । ଏହି କଥାଟି ମନେ ରଖିବା ଦରକାର ।

'ଭାଗବତ'ରେ କୁହାଯାଇଛି ଯେ, ତାଙ୍କ ପ୍ରତି ଉତ୍ପନ୍ନ ହେଉଥିବା ଅନୁରାଗ ଜଗତର ଅନ୍ୟ ସବୁ ଅନୁରାଗକୁ ଭୁଲାଇ ଦିଏ । ସୁତରାଂ ତାଙ୍କ ପ୍ରତି ଆମର ଭଲ ପାଇବା କେତେ ବୃଦ୍ଧି ପାଇଲା—ଏହା ବିଚାର କରି ଆମକୁ ସାଧନା ପଥରେ ଆଗେଇବାକୁ ପଡ଼ିବ । ଆମେ ତାଙ୍କ ନାଁରେ ବାରମ୍ବାର ମୂର୍ଚ୍ଛା ଗଲେ ମଧ୍ୟ କିଛି ହେବ ନାହିଁ । ଜୀବନଯାକ ବସି ଧ୍ୟାନ କଲେ ମଧ୍ୟ କିଛି ହେବନାହିଁ । ବର୍ଷ ବର୍ଷ ଧରି ଲକ୍ଷ ଲକ୍ଷ ଜପ କଲେ ମଧ୍ୟ କିଛି ହେବ ନାହିଁ । ନାନା ତୀର୍ଥ ପର୍ଯ୍ୟଟନ କଲେ ମଧ୍ୟ କିଛି ହେବ ନାହିଁ । ଆମ ହୃଦୟକୁ ଯଦି ସିଏ ସଦାସର୍ବଦା ପରିପୂର୍ଣ୍ଣ କରି ରହନ୍ତି, ତେବେ ଯାଇ ହେବ । ତାଙ୍କ ବ୍ୟତୀତ ଅନ୍ୟ କୌଣସି ଚିନ୍ତା ବା ବସ୍ତୁ ବା ବ୍ୟକ୍ତିର ସ୍ଥାନ ସେଠାରେ ରହିଲେ ହେବ ନାହିଁ । ଆମ ହୃଦୟର ପୂର୍ଣ୍ଣ ଅନୁରାଗ ତାଙ୍କୁ ନିବେଦନ କରି ତାଙ୍କ ଚରଣରେ ନିଜକୁ ସଂପୂର୍ଣ୍ଣ ଭାବରେ ସମର୍ପଣ କରିବାକୁ ହେବ । ଏହା ହିଁ ଶ୍ରୀରାମକୃଷ୍ଣଙ୍କ ସାଧନାର ସାରକଥା । ଆଉ ଆମେ ଯଦି ତାଙ୍କୁ ହୃଦୟ ଦେଇ ଭଲ ପାଇପାରୁ, ତା'ହେଲେ ତାଙ୍କ ସୃଷ୍ଟ ଏହି ଚରାଚର ବିଶ୍ୱରେ ଥିବା ସମସ୍ତ ଜୀବଙ୍କ ଭିତରେ ମଧ୍ୟ ସିଏ ରହିଛନ୍ତି—ଏହି ବୁଦ୍ଧି ଆସିବ । ଆମେ ଯେପରି ସେହି ଆଦର୍ଶାନୁଯାୟୀ ଜୀବନ ବିତାଇ ପାରିବା—ଏହାହିଁ ମୋହର ପ୍ରାର୍ଥନା । ଏହି ଆଦର୍ଶ ଯେପରି ଆମ ଜୀବନକୁ ପୂର୍ଣ୍ଣଭାବରେ ପ୍ରଭାବିତ କରୁ ଏବଂ ଜଗତର ଅନ୍ୟ ସବୁ କିଛି ତୁଚ୍ଛ ବୋଧ ହେଉ । ତାଙ୍କ କୃପାରେ ସବୁ କିଛି ସମ୍ଭବପର । ତାଙ୍କ ନିକଟରେ ପ୍ରାର୍ଥନା କରୁଛି ଯେ ଆମ ସଭିଙ୍କର ସେହିପରି ଅନୁରାଗ ହେଉ ।

( ୪ ଅଗଷ୍ଟ, ୧୯୮୫ରେ ବାଂଲାଦେଶର ସିଲ୍‌ହଟ ଶ୍ରୀରାମକୃଷ୍ଣ ଆଶ୍ରମରେ ପ୍ରଦତ୍ତ ପରମ ପୂଜନୀୟ ମହାରାଜଙ୍କର ଅଭିଭାଷଣ ।)

## ମନ୍ତ୍ର ଦୀକ୍ଷା ଏବଂ ସାଧନର ପରମ ପ୍ରାପ୍ତି

'ଦୀକ୍ଷା' ଶବ୍ଦର ଅର୍ଥ ହେଉଛି—କିଛି ଆରମ୍ଭ କରିବାର ସଂକଳ୍ପ ବା ବ୍ରତ ଗ୍ରହଣ । ଇଂରାଜୀରେ 'ଦୀକ୍ଷା' ହେଉଛି 'initiation', ଯାହାର ଅର୍ଥ ହେଲା ପ୍ରବର୍ତ୍ତନ । ଅର୍ଥାତ୍ କୌଣସି ଏକ ବିଶେଷ ପଦ୍ଧତି ଅନୁସରଣ କରିବା ବା କରେଇବା । ଦୀକ୍ଷାର ଉଦ୍ଦେଶ୍ୟ ଏବଂ ପ୍ରଣାଳୀ ନାନା ପ୍ରକାରର ହୋଇପାରେ । ଶାସ୍ତ୍ରରେ 'ଯଜ୍ଞଦୀକ୍ଷା'ର ଉଲ୍ଲେଖ ରହିଛି, ଯାହାର ଅର୍ଥ ହେଲା—କିଛି ଅଭିଷ୍ଟ ଲାଭ କରିବା ଉଦ୍ଦେଶ୍ୟରେ ବିଶେଷ ଯଜ୍ଞ କରିବାର ସଂକଳ୍ପ । ଏଠାରେ ଆମର ଆଲୋଚ୍ୟ ବିଷୟ ହେଉଛି ମନ୍ତ୍ରଦୀକ୍ଷା ଅର୍ଥାତ୍ ଅନ୍ୟକୁ ମନ୍ତ୍ର ଜପ କରେଇବାର ସଂକଳ୍ପ ବା ବ୍ରତ ଗ୍ରହଣ ।

ମନ୍ତ୍ର କଣ ? 'ମନ୍ତ୍ର' ହେଲା ଆଧ୍ୟାତ୍ମିକ ଅଲୌକିକ ଅଥବା ସଂକେତ ସୂତ୍ର, ଯାହାର ବାରମ୍ବାର ଆବୃତ୍ତି ଦ୍ୱାରା ଅଜ୍ଞାନର ବନ୍ଧନ, ଜନ୍ମ-ମୃତ୍ୟୁର ଚକ୍ରରୁ ମୁକ୍ତିଲାଭ କରିହୁଏ । ଏହା ହିଁ ହେଲା ମନ୍ତ୍ରଦୀକ୍ଷା ଗ୍ରହଣ କରିବାର ଉଦ୍ଦେଶ୍ୟ । ମନ୍ତ୍ରଦୀକ୍ଷା କଣ ଏବଂ ଆମର ଆଧ୍ୟାତ୍ମିକ ଜୀବନରେ ଏହାର ଗୁରୁତ୍ୱ କେତେ ବେଶୀ ଇତ୍ୟାଦି ବିଷୟରେ ଆମ ମନରେ ଅନେକେ ସଂଶୟ, ଅନେକ ଭ୍ରାନ୍ତ ଧାରଣା ରହିଛି । ଅନେକେ ମନ୍ତ୍ରଦୀକ୍ଷାର ତାତ୍ପର୍ଯ୍ୟ କଣ ଏବଂ ଆଧ୍ୟାତ୍ମିକ ଜୀବନରେ ମନ୍ତ୍ରଦୀକ୍ଷା ଦ୍ୱାରା କଣ ଲାଭ ହୁଏ, ତାହା ଭଲ ଭାବରେ ନ ବୁଝି 'ମନ୍ତ୍ରଦୀକ୍ଷା' ନେବାକୁ ଚାହାନ୍ତି । ଈଶ୍ୱର ଲାଭ ଉଦ୍ଦେଶ୍ୟରେ ଗୁରୁଦତ୍ତ ମନ୍ତ୍ର ନିୟମିତ ଜପ କରିବାରେ ବ୍ରତୀ ହେବା ଅର୍ଥରେ ମୁଁ 'ମନ୍ତ୍ରଦୀକ୍ଷା' ଶବ୍ଦଟି ଏଠାରେ ବ୍ୟବହାର କରିବି । ସଂସ୍କୃତରେ ମନ୍ତ୍ର ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା—"ମନନାତ୍ ତ୍ରାୟତେ ଇତି ମନ୍ତ୍ରଃ ।" 'ମନ୍ତ୍ର' ମାନେ ଯାହାକୁ ମନନ କରି ମଣିଷ ଜନ୍ମ-ମୃତ୍ୟୁର ଚକ୍ର, ସଂସାର-ସମୁଦ୍ର, ମାୟା ବା ଅବିଦ୍ୟାରୁ ମୁକ୍ତି ପାଇଥାଏ । ଗୁରୁ ନିର୍ଦ୍ଦିଷ୍ଟ ପନ୍ଥାକୁ ଅନୁସରଣ କରି ମନ୍ତ୍ର ଜପକୁ କୁହାଯାଏ 'ଦୀକ୍ଷା' ।

ପ୍ରାଚୀନ କାଳରେ ମନ୍ତ୍ର କହିଲେ ବୈଦିକ ସୂକ୍ତକୁ ବୁଝାଉଥିଲା । ମନ୍ତ୍ର ଏବଂ ବ୍ରାହ୍ମଣକୁ ନେଇ ଗଠିତ ହେଲା ସମଗ୍ର ବେଦ । "ମନ୍ତ୍ରବ୍ରାହ୍ମୋଣୋର୍ବେଦନାମ-ଧେୟମ୍"—ବେଦ ଶବ୍ଦର ଅର୍ଥ ହେଲା ମନ୍ତ୍ର ଏବଂ ବ୍ରାହ୍ମଣସମୂହ । ନାନା ପ୍ରକାରର ଯଜ୍ଞ ସଂପର୍କରେ ଋଷିମାନଙ୍କର ଉକ୍ତିଗୁଡ଼ିକ ହେଲା 'ମନ୍ତ୍ର' । ବେଦର ଯେଉଁ ଅଂଶରେ ମନ୍ତ୍ରାଦିର ବ୍ୟାଖ୍ୟା ଏବଂ ସେମାନଙ୍କର ପ୍ରୟୋଗ କରିବାର କଥା ଉଲ୍ଲେଖ କରାଯାଇଛି ତାହାକୁ କହନ୍ତି 'ବ୍ରାହ୍ମଣ' । ବିଭିନ୍ନ ଯଜ୍ଞ ସଂପାଦନ କଲାବେଳେ ମନ୍ତ୍ର କିପରି ବ୍ୟବହୃତ ହେବ, ତାହା ବ୍ରାହ୍ମଣରେ ଉଲ୍ଲେଖ କରାଯାଇଛି । ପୁଣି ତନ୍ତ୍ରଶାସ୍ତ୍ରରେ ମନ୍ତ୍ରର ଭିନ୍ନ ଅର୍ଥ ଦିଆଯାଇଛି । ସେଠାରେ ଈଶ୍ୱରଙ୍କର ବିଶେଷ ମହିମାବୋଧକ

ସାଙ୍କେତିକ ଶବ୍ଦ-ସୂତ୍ରକୁ 'ମନ୍ତ୍ର' କୁହାଯାଏ । ସେଗୁଡ଼ିକ ଏପରି ରହସ୍ୟମୟ ଭାଷାରେ ଲେଖା ହୋଇଛି ଯେ ଯାହାର ଅର୍ଥ ଅଦୀକ୍ଷିତଙ୍କ ନିକଟରେ ବୋଧଗମ୍ୟ ନୁହେଁ । ତାନ୍ତ୍ରିକ ମନ୍ତ୍ର ସମୂହ ହେଲା ସାଙ୍କେତିକ, ଅତ୍ୟନ୍ତ ଶକ୍ତି ସମ୍ପନ୍ନ, ସ୍ୱଳ୍ପ ଅକ୍ଷର ଗ୍ରଥିତ ତଥା ଈଶ୍ୱରଙ୍କର ଗୁଣବାଚକ ।

ବୈଦିକ ଅଥବା ତାନ୍ତ୍ରିକ ମନ୍ତ୍ର ହେଲା ଅପୌରୁଷେୟ—ଯାହାକି ମଣିଷ ଦ୍ୱାରା ରଚିତ ନୁହେଁ । ଗୁରୁଶିଷ୍ୟ ପରମ୍ପରାରେ ଏଗୁଡ଼ିକ ଚାଲିଆସୁଛି । ବେଦ ଏବଂ ତନ୍ତ୍ର ଉଭୟେ କହନ୍ତି ଯେ ମନ୍ତ୍ର ହେଉଛି ଶାଶ୍ୱତ ଓ ଚିରନ୍ତନ । ବେଦ ମତରେ ଋଷିମାନଙ୍କ ନିକଟରେ ଏଗୁଡ଼ିକ ପ୍ରକାଶିତ ହୋଇଥିଲା । ତନ୍ତ୍ର କହନ୍ତି, ମନ୍ତ୍ର ହେଲା ପାର୍ବତୀଙ୍କ ପ୍ରଶ୍ନର ଉତ୍ତର; ମହାଦେବଙ୍କ ମୁଖନିଃସୃତ ବାଣୀ । ପାର୍ବତୀ ପଚାରିଛନ୍ତି ଓ ଶିବ ଉତ୍ତର ଦେଇଛନ୍ତି । ତନ୍ତ୍ର ମତରେ ମନ୍ତ୍ର ଈଶ୍ୱରଙ୍କର ବିଶେଷ ମହିମାବାଚକ ସାଙ୍କେତିକ ଶବ୍ଦ । ଈଶ୍ୱରଙ୍କର ଭିନ୍ନ ଭିନ୍ନ ଐଶ୍ୱର୍ଯ୍ୟ ବା ଶକ୍ତିକୁ ନେଇ ଭିନ୍ନ ଭିନ୍ନ ମନ୍ତ୍ର ଅଛି । ମନ୍ତ୍ରଦୀକ୍ଷାର ଅର୍ଥ ହେଲା ଗୁରୁଦ୍ୱାରା ଶିଷ୍ୟକୁ ବିଶେଷ ମନ୍ତ୍ରଦାନ । ଶିଷ୍ୟ ସେହି ମନ୍ତ୍ରକୁ ମନନ ବା ଜପ କରିବାରେ ବ୍ରତୀ ହୁଏ ।

ବୈଦିକ ଅଥବା ତାନ୍ତ୍ରିକ ମନ୍ତ୍ର ମଧ୍ୟରେ ପାର୍ଥକ୍ୟ ଏତିକି ଯେ, ବୈଦିକ ମନ୍ତ୍ର ସ୍ତବ-ସ୍ତୋତ୍ରର ସଂକ୍ଷିପ୍ତ ରୂପ । ଆଉ ତାନ୍ତ୍ରିକ ମନ୍ତ୍ର ହେଲା ବିଶେଷ ବିଶେଷ ଦେବତା ବା ଦେବୀଙ୍କ ଦୈବମାହାତ୍ମ୍ୟଜ୍ଞାପକ ସାଙ୍କେତିକ ଶବ୍ଦ । ଅଧୁନା ଭାରତ ବର୍ଷରେ ଆମେ ପ୍ରଧାନତଃ ତାନ୍ତ୍ରିକ-ପୌରାଣିକ ପଦ୍ଧତି ଅନୁସାରେ ମନ୍ତ୍ରଦୀକ୍ଷା ଗ୍ରହଣ କରିଥାଉ । ବୈଦିକ ଯୁଗରେ ମଧ୍ୟ ଦୀକ୍ଷାର ପ୍ରଚଳନ ଥିଲା; ଆଧୁନିକ କାଳରେ ମଧ୍ୟ ସେହି ଧାରା ଚାଲି ଆସୁଛି । ଶିଷ୍ୟ ଯେତେବେଳେ ଗୁରୁ ଗୃହକୁ ଯାଉଥିଲା ଏବଂ ଶିଷ୍ୟ ରୂପରେ ଗୃହୀତ ହେଉଥିଲା, ସେତେବେଳେ ତାକୁ ବିଖ୍ୟାତ ଗାୟତ୍ରୀ ମନ୍ତ୍ରରେ ଦୀକ୍ଷିତ କରାଯାଉଥିଲା । ବୈଦିକ ଗାୟତ୍ରୀ ମନ୍ତ୍ର ଆକାରରେ ଦୀର୍ଘ କିନ୍ତୁ ତାନ୍ତ୍ରିକ ମନ୍ତ୍ର ସଂକ୍ଷିପ୍ତ ।

ମନ୍ତ୍ର ଅତ୍ୟନ୍ତ ସତର୍କତା ସହିତ ରକ୍ଷା କରିବାକୁ ହୁଏ ଯେପରି ଏହାର ଧ୍ୱନି ବା ପ୍ରକୃତିର କୌଣସି ପରିବର୍ତ୍ତନ ହେବନାହିଁ । ବର୍ତ୍ତମାନ ଲିଖିତ ଆକାରରେ ବେଦ ମିଳୁଛି, କିନ୍ତୁ ପୂର୍ବକାଳରେ ଗୁରୁ କେବଳ ଶିଷ୍ୟକୁ ବେଦ ଶୁଣାଉଥିଲେ । ସେଥିପାଇଁ 'ବେଦ'କୁ 'ଶ୍ରୁତି' କୁହାଯାଏ । ଶିଷ୍ୟ ଗୁରୁଙ୍କ ନିକଟରୁ ଶୁଣି ମନେ ରଖୁଥିଲେ । ମନ୍ତ୍ରର କୌଣସି ପରିବର୍ତ୍ତନ ବା ପରିବର୍ଜନ ଗୃହୀତ ହେଉ ନଥିଲା କି ବ୍ୟାକରଣଗତ ସଂଶୋଧନର ମଧ୍ୟ ପ୍ରଚଳନ ନଥିଲା । ଏହି ମନ୍ତ୍ରଗୁଡ଼ିକ ସ୍ୱୟଂ ସମ୍ପୂର୍ଣ୍ଣ ଥିଲା ଏବଂ ଶିଷ୍ୟ କେବଳ ତାହାକୁ ଧ୍ୟାନ କରୁଥିଲେ ଏବଂ ଗୁରୁଙ୍କ ନିର୍ଦ୍ଦେଶ ମାନି ଚଳୁଥିଲେ । ତନ୍ତ୍ରଶାସ୍ତ୍ରରେ ମଧ୍ୟ ମନ୍ତ୍ର ଅପରିବର୍ତ୍ତିତ ରଖିବା ଓ ଯଥାଯଥ ଭାବରେ ଆବୃତ୍ତି ବା ଜପ

କରିବାର ବିଧି ଅଛି । ତାନ୍ତ୍ରିକ ମନ୍ତ୍ରଦାନ ବିଧିରେ ବିଶେଷ ଗୋପନୀୟତା ରକ୍ଷା କରାଯାଇଥାଏ । କାହିଁକି ନା ଏପରି କଠୋର ନିୟମ ନ ରଖିଲେ ମନ୍ତ୍ର ଆଶାନୁରୂପ ଫଳଦାୟୀ ହୁଏ ନାହିଁ । ମନ୍ତ୍ର ମୁହଁରେ ଉଚ୍ଚାରଣ କଲେ ତା'ର ଶକ୍ତି ହ୍ରାସ ପାଏ । ମନ୍ତ୍ର ପ୍ରବଳ ଶକ୍ତିସମ୍ପନ୍ନ ଓ ଆମମାନଙ୍କର ଆଧ୍ୟାତ୍ମିକ ଜ୍ଞାନ ଉନ୍ମେଷର ସହାୟକ । ମନ୍ତ୍ର ଜପ ଦ୍ୱାରା ଇଷ୍ଟଙ୍କ ମୂର୍ତ୍ତି ବା ପ୍ରକୃତ ରୂପ ଶିଷ୍ୟ ସମକ୍ଷରେ ପ୍ରତିଭାତ ହୁଏ ।

ବେଦ ଏବେ ମୁଦ୍ରିତ ଆକାରରେ ଉପଲବ୍ଧ ହେଉଥିବାରୁ, ଯିଏ ଚାହିଁବ ସେ ବେଦ ପଢ଼ି ପାରିବ । ତାନ୍ତ୍ରିକ ଗ୍ରନ୍ଥାଦିରେ ମଧ୍ୟ ତାନ୍ତ୍ରିକ ମନ୍ତ୍ର ମୁଦ୍ରିତ ହେଲାଣି । ଅତଏବ ସେଗୁଡ଼ିକ ସମସ୍ତଙ୍କର ଅଧିଗମ୍ୟ । କିନ୍ତୁ ବେଦ ଏବଂ ତନ୍ତ୍ର ଉଭୟ ଶାସ୍ତ୍ରରେ କୁହାଯାଇଛି ଯେ, ଏହା ସଠିକ ଉପାୟ ନୁହେଁ । ଉପନିଷଦ୍ କହିଛନ୍ତି : "ଆଚାର୍ଯ୍ୟାଦ୍ ହି ଏବ ବିଦ୍ୟା ବିଦିତା ସାଧିଷ୍ଠଂ ପ୍ରାପତି ଇତି ।" (ଛାନ୍ଦୋଗ୍ୟ, ୪/୯/୩) ଗୁରୁଙ୍କ ନିକଟରୁ ଲବ୍ଧ ମନ୍ତ୍ର ହିଁ କେବଳ ଫଳପ୍ରସୂ ହୋଇଥାଏ । ଜୀବନରେ ସାମାନ୍ୟତମ ଜ୍ଞାନଲାଭକୁ ସାର୍ଥକ କରିବାକୁ ହେଲେ ଗୁରୁଙ୍କ ନିକଟକୁ ଯାଇ ଜାଣିବାକୁ ଏବଂ ଉପଦେଶ ନେବାକୁ ହେବ । ଏହି ନୀତିକୁ ନିଷ୍ଠା ସହିତ ଅନୁସରଣ କରିବାର ନିର୍ଦ୍ଦେଶ ଉଭୟ ବେଦ ଓ ପୁରାଣରେ ରହିଛି । ଏହାର କାରଣ ହେଲା, ଗୁରୁ କେବଳ ମନ୍ତ୍ର ଦାନ କରନ୍ତି ନାହିଁ, ତାଙ୍କ ଆଧ୍ୟାତ୍ମିକ ଶକ୍ତି ମଧ୍ୟ ଶିଷ୍ୟ ଭିତରେ ସଂଚାର କରିଥାନ୍ତି । ବହି ପଢ଼ିଲେ ଏହି ଶକ୍ତି ସଂଚାର ହୁଏ ନାହିଁ ।

ବିଷୟଟିକୁ ଯୁକ୍ତି ଓ ବୁଦ୍ଧି ସାହାଯ୍ୟରେ ବୁଝିବାକୁ ହେବ । ଧରାଯାଉ ବହିରୁ କୌଣସି ଗୋଟିଏ ନୀତିକଥା ପଢ଼ିଲେ ତାହା ଆମକୁ କିଛିଟା ପ୍ରଭାବିତ କରିଥାଏ । କିନ୍ତୁ ସେହି ନୀତିଶିକ୍ଷା ଯଦି ଆମେ ଏପରି ଜଣଙ୍କ ନିକଟରୁ ପାଇଥାଉ ଯାହାଙ୍କୁ ଆମେ ଶ୍ରଦ୍ଧା ଓ ଭକ୍ତି କରୁ, ସେତେବେଳେ ତାର ପ୍ରତିକ୍ରିୟା ସ୍ୱଭାବତଃ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ହୋଇଥାଏ । ସେହିପରି ମନ୍ତ୍ରଦୀକ୍ଷା ଦ୍ୱାରା ଆଧ୍ୟାତ୍ମିକ ଶକ୍ତି ସଂଚାର କରିବାର ବିଷୟଟି ବୁଝି ନ ପାରିଲେ ମଧ୍ୟ ଅନ୍ତତଃ ଏତିକି ବୁଝିହୁଏ ଯେ, ଗୋଟିଏ ପ୍ରଦୀପରୁ ଆଉ ଗୋଟିଏ ପ୍ରଦୀପ ଜଳାଇ ନିଆ ହେଲା । ସୁତରାଂ ଗୋଟିଏ ଆତ୍ମାକୁ ଆଲୋକିତ କରିବାକୁ ହେଲେ ଏପରି ଏକ ଆତ୍ମା ପ୍ରୟୋଜନ ଯାହାକି ପୂର୍ବରୁ ଆଲୋକପ୍ରାପ୍ତ । ଗୁରୁଙ୍କଠାରୁ ଶିଷ୍ୟ ଭିତରେ ସଂଚାରିତ ହେଉଥିବା ଏପରି ପ୍ରାଣବାନ୍ ସଂଯୋଗ ବ୍ୟତୀତ 'ଶକ୍ତି ସଂଚାର' ସମ୍ଭବ ନୁହେଁ ।

ଏପରି ଜୀବନ୍ତ ସଂଯୋଗ ମାଧ୍ୟମରେ ମନ୍ତ୍ର ଶକ୍ତିଶାଳୀ ହୁଏ । ଏହି ଶକ୍ତିକୁ 'ରକ୍ଷା' (Preserve) କରିବା ପାଇଁ ଶାସ୍ତ୍ର ଶିଷ୍ୟକୁ 'ମନ୍ତ୍ରଗୁପ୍ତି'ର ନିର୍ଦ୍ଦେଶ ଦେଇଛନ୍ତି ଏବଂ ଯେଉଁମାନେ ତାହା ମାନି ଚଳିବେ ନାହିଁ ସେମାନଙ୍କ ପାଇଁ କଠୋର ଶାସ୍ତିର ବିଧାନ ରହିଛି । ଏହାର ମୂଳ ଉଦ୍ଦେଶ୍ୟ ହେଲା ଲୋକମାନେ ଯେପରି ମନ୍ତ୍ରକୁ ଲଘୁ

ଭାବରେ ଦେଖିବେ ନାହିଁ । ସେଥିପାଇଁ ଏପରି ସତର୍କତା ଅବଲମ୍ବନ କରାଯାଇଛି । ନିଷ୍ଠା ସହକାରେ ମନ୍ତ୍ର ଗ୍ରହଣ କରିବାକୁ ହୁଏ । ଏଥିରେ କୌଣସି ପରୀକ୍ଷା ନିରୀକ୍ଷା ଚଳେ ନାହିଁ । ସାଧକ ବା ଭକ୍ତର ଜୀବନରେ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ । ଐକାନ୍ତିକ ନିଷ୍ଠା ବିନା ଈଶ୍ୱର ଲାଭ ସମ୍ଭବ ନୁହେଁ—ଏହା ଆମର ଜାଣିବା ଦରକାର । ଗୁରୁ କେବଳ ମନ୍ତ୍ର ଦାନ କରନ୍ତି ନାହିଁ—ଜ୍ଞାନ ମଧ୍ୟ ଦାନ କରନ୍ତି, ଯେଉଁ ଜ୍ଞାନ ତାଙ୍କର ନିଜସ୍ୱ ସାଧନାଲବ୍‌ଧ ବା ଏହି ପଥର ଆଚାର୍ଯ୍ୟମାନଙ୍କର ଅଭିଜ୍ଞତାପ୍ରସୂତ । ସୁତରାଂ ଶିଷ୍ୟଙ୍କୁ ସଠିକ୍ ପଥରେ ଚାଳିତ କରିବା ପାଇଁ ସିଏ ହେଲେ ଉପଯୁକ୍ତ ବ୍ୟକ୍ତି ।

ଏ ପ୍ରସଙ୍ଗରେ ଆହୁରି ଗୋଟିଏ କଥା ମନକୁ ଆସୁଛି । ମନ୍ତ୍ର ଅସଂଖ୍ୟ । ଆମ ସମ୍ମୁଖକୁ ଅଣାହେଲେ ଆମେ ବିଭ୍ରାନ୍ତ ହୋଇଯିବା । କେଉଁଟିକୁ ବାଦ୍ ଦେବା କେଉଁଟିକୁ ଗ୍ରହଣ କରିବା ଏବଂ ଏହି ସଂଶୟ ସୃଷ୍ଟି ହେବ । ଏପରି ସଂଶୟରୁ ମୁକ୍ତ ହେବାର ଶ୍ରେଷ୍ଠ ଉପାୟ ହେଲା, ଏ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଥିବା ସୁଯୋଗ୍ୟ ବ୍ୟକ୍ତିଙ୍କ ଆଦେଶ ମାନି ଚଳିବା । ସେହି ସୁଯୋଗ୍ୟ ବ୍ୟକ୍ତି ହେଲେ 'ଗୁରୁ' ।

ବିଶେଷ ଭାବରେ ତନ୍ତ୍ର ଶାସ୍ତ୍ରରେ କୁହାଯାଇଛି ଯେ, ଗୁରୁ ହେଲେ ସ୍ୱୟଂ ଈଶ୍ୱର । ଗୁରୁ ସ୍ତୋତ୍ରରେ କୁହାଯାଇଛି : ''ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁର୍ଦେବୋ ମହେଶ୍ୱରଃ । ଗୁରୁରେବ ପରଂ ବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ ।''—ଗୁରୁ ହିଁ ବ୍ରହ୍ମା, ଗୁରୁ ହିଁ ବିଷ୍ଣୁ, ଗୁରୁ ହିଁ ଶିବ, ଗୁରୁ ହିଁ ସ୍ୱୟଂ ବ୍ରହ୍ମ । ସେହି ଗୁରୁଙ୍କୁ ପ୍ରଣାମ ।

ଗୁରୁ ଏବଂ ପରଂବ୍ରହ୍ମଙ୍କୁ ଅଭିନ୍ନ ମନେ କରାହୁଏ । ଶ୍ରୀରାମକୃଷ୍ଣ କହିଛନ୍ତି, ''ସଚ୍ଚିଦାନନ୍ଦ ହିଁ ଗୁରୁ, ଗୁରୁ ହିଁ ସଚ୍ଚିଦାନନ୍ଦ ।'' ବେଦ ଓ ଶାସ୍ତ୍ରର ଶିକ୍ଷା ସହିତ ଏହି ଧାରଣାର ସଂଗତି ଅଛି । କିନ୍ତୁ ଆମେ ଯେତେବେଳେ ମନ୍ତ୍ରଦୀକ୍ଷା ନେଉ ସେତେବେଳେ ଉପଲବ୍‌ଧି କରିପାରୁନା ଯେ ସର୍ବଜ୍ଞ ସର୍ବ ଶକ୍ତିମାନ୍ ବ୍ରହ୍ମ ଆମମାନଙ୍କୁ ଦୀକ୍ଷା ଦେଉଛନ୍ତି । ଆମେ ଭାବୁ, ଆମମାନଙ୍କୁ ସଠିକ୍ ପଥରେ ଚାଳିତ କରିବାକୁ ଏପରି ଜଣେ ଉପଯୁକ୍ତ ବ୍ୟକ୍ତି ବିଶେଷଙ୍କୁ ଆମେ ଗୁରୁ ରୂପେ ନିର୍ବାଚନ କରିଥାଉ, ଯିଏକି ଜନ୍ମ-ମୃତ୍ୟୁର ଅଧୀନ ବା ପାର୍ଥିବ ଅନେକ ଦୁର୍ବଳତାର ଅଧୀନ, ଯାହାଙ୍କର ଜାଗତିକ ସାମର୍ଥ୍ୟର ସୀମା ଅଛି ସୁତରାଂ ବ୍ରହ୍ମଙ୍କ ସହିତ ସିଏ କଦାପି ଅଭିନ୍ନ ହୋଇପାରନ୍ତି ନାହିଁ । କିନ୍ତୁ ଶାସ୍ତ୍ର କହେ—ଗୁରୁ ଏବଂ ଈଶ୍ୱର ଏକ । ତା'ହେଲେ ଶାସ୍ତ୍ର ବାକ୍ୟ ସହିତ ବାସ୍ତବର କ'ଣ ବିରୋଧ ଘଟୁନାହିଁ କି ? ହଁ, ଗୋଟିଏ ଦିଗରୁ ଘଟୁଛି । ତେବେ କଥାଟି ଆମର ପ୍ରତିମା ପୂଜା ପରି । ଈଶ୍ୱରଙ୍କର ବିଶେଷ ରୂପ କଳ୍ପନା କରି ଆମେ ପ୍ରତିମା ଗଢ଼ିଥାଉ । ପ୍ରତିମାଗୁଡ଼ିକ ଏପରି ସବୁ ଉପକରଣ ଦ୍ୱାରା ନିର୍ମିତ ଯାହାକି ଜଡ଼ ପଦାର୍ଥ ଏବଂ ତାକୁ ହିଁ ଆମେ ପୂଜା ଓ ଧ୍ୟାନ କରୁ । କାହିଁକି କରୁ ? କାରଣ ଆମେ 'ଅନନ୍ତ'ର ଧାରଣା

କରିପାରୁନା ବୋଲି, ନିରାକାର ନିର୍ବିଶେଷ ତତ୍ତ୍ୱ ଆମର କଳ୍ପନାତୀତ । ସୁତରାଂ ଆମକୁ କୌଣସି ଏକ ରୂପକୁ ଅବଲମ୍ବନ କରିବାକୁ ପଡ଼ିଥାଏ, ତାହା କୌଣସି ମୂର୍ତ୍ତି ବା ଛବି ବା ପ୍ରତୀକ ହୋଇପାରେ । ପୃଥିବୀରେ ଏପରି କୌଣସି ଧର୍ମ ନାହିଁ ଯେଉଁ ମୂର୍ତ୍ତିପୂଜା ବା ପ୍ରତିମାପୂଜାର ପ୍ରଚଳନ ନାହିଁ । ମୂର୍ତ୍ତି ବା ପ୍ରତୀକ ବ୍ୟତୀତ ଆମେ ଅନ୍ୟ କୌଣସି ଭାବରେ ଈଶ୍ୱରଙ୍କର ଧାରଣା କରିପାରୁନା । ଏପରିକି ଯେଉଁ ସବୁ ଧର୍ମ, ମୂର୍ତ୍ତି ଆଦି ଚିନ୍ତା ନ କରିବାର ଦୃଢ଼ ସମର୍ଥକ, ସେମାନେ ମଧ୍ୟ କୌଣସି ନା କୌଣସି ପ୍ରତୀକକୁ ଆଶ୍ରୟ କରିଥାନ୍ତି । ମନ୍ତ୍ର ହେଲା ଈଶ୍ୱରଙ୍କ ପ୍ରତୀକ, ଶବ୍ଦ ରୂପରେ ପ୍ରକାଶିତ ବ୍ରହ୍ମ । ଅତ୍ୟୁଜ୍ୱଳ ଜ୍ୟୋତିଃ ରୂପରେ ମନ୍ତ୍ରକୁ ପ୍ରତ୍ୟକ୍ଷ କରିବାର ଅଭିଜ୍ଞତା ଅନେକ ସାଧକଙ୍କର ହୋଇଛି । ଏହା ଏକ ଅଲୌକିକ ଅଭିଜ୍ଞତା । ଏପରି ଅନେକ ଅଲୌକିକ ଦୃଷ୍ଟାନ୍ତ ଧର୍ମକ୍ଷେତ୍ରରେ ରହିଛି । ସାଧାରଣତଃ ତର୍କବିଚାର ଦ୍ୱାରା ଏସବୁ ଅଭିଜ୍ଞତାର ବ୍ୟାଖ୍ୟା ଆମେ କରିପାରୁନା । ଏହା ଯୁକ୍ତିର ଅତୀତ । ଏସବୁ ଯେ ବାସ୍ତବ ଅଭିଜ୍ଞତା—ଏହା ଅବିଶ୍ୱାସୀମାନଙ୍କ ନିକଟରେ ପ୍ରମାଣ ଆମେ କରାଇ ପାରିବୁ ନାହିଁ । ମୂର୍ତ୍ତି ବା ଶବ୍ଦ ବା ପ୍ରତୀକକୁ ଅବଲମ୍ବନ କରି ଈଶ୍ୱର ଲାଭ ପାଇଁ ଈଶ୍ୱରଙ୍କୁ କଳ୍ପନା କରିବା ପ୍ରୟୋଜନ ହୋଇଥାଏ । ସାଧାରଣ ମଣିଷ, ଈଶ୍ୱରଙ୍କର ଧାରଣା ଆକାର ମାଧ୍ୟମରେ କରିପାରେ । ସେ ନିରାକାରର ଧାରଣା କରିପାରେ ନାହିଁ । ଏଠି ପ୍ରଶ୍ନ ଉଠିପାରେ, ତା'ହେଲେ ଆମେ କ'ଣ ଚିରଦିନ ଏହି ରୂପ ଭିତରେ ଆବଦ୍ଧ ରହିବା, ନା ରୂପ ମାଧ୍ୟମରେ ଆମେ ଅରୂପକୁ ଧରିବା ? ମନର ବର୍ତ୍ତମାନ ସ୍ଥିତିର ରୂପାନ୍ତର ନ ହେବାଯାଏ ସହସା ଆମେ ନିରାକାରରେ ପହଁଚି ପାରିବା ନାହିଁ । ଆକାର ବା ପ୍ରତୀକ ବିନା ଆମେ ଯେପରି ପ୍ରଥମ ଅବସ୍ଥାରେ କୌଣସି ବିଷୟ ବା ବସ୍ତୁର ଚିନ୍ତା କରିପାରୁନା, ସେପରି ଆଧ୍ୟାତ୍ମିକ ସାଧନାର ପ୍ରାଥମିକ ସ୍ତରରେ କୌଣସି ମୂର୍ତ୍ତି ବା ପ୍ରତୀକ ବିନା ଈଶ୍ୱରଙ୍କର କଳ୍ପନା କରିପାରୁନା । ସୁତରାଂ ମୂର୍ତ୍ତି ବା ପ୍ରତୀକ ସାଧନା କ୍ଷେତ୍ରରେ ପ୍ରୟୋଜନ ଏବଂ ମନ୍ତ୍ର ହେଲା ଈଶ୍ୱରଙ୍କର ପ୍ରତୀକ ।

ମନେକରାଯାଉ, ଈଶ୍ୱରଙ୍କର କୌଣସି ଏକ ମହିମାସୂଚକ ବିଶେଷ ରୂପକୁ ଆମେ ଭଲପାଉ । ସେ ରୂପକୁ ବିକୃତ କରିବାକୁ ଆମେ ଯେପରି ପସନ୍ଦ କରିବା ନାହିଁ, ସେହିପରି ମନ୍ତ୍ରର ମଧ୍ୟ ବିକୃତିକରଣ ଚଳିବ ନାହିଁ । ପରିବର୍ତ୍ତନ ବିନା ତାକୁ ହିଁ ଜପ କରିବାକୁ ହେବ । ଏହି ନିୟମକୁ ଐକାନ୍ତିକ ଭାବରେ ମାନି ଚାଲିବାକୁ ହୁଏ । ଏହା ବ୍ୟତୀତ ଆମର କୌଣସି ଏକ ନିର୍ଦ୍ଦିଷ୍ଟ ସାଧନ ପଦ୍ଧତିକୁ ମଧ୍ୟ ଅନୁସରଣ କରିବା ଦରକାର ।

ସାଧନା ପଥରେ ଅଗ୍ରଗତି ପାଇଁ ସର୍ବଦା କ'ଣ ଗୁରୁଙ୍କ ନିକଟକୁ ଯିବାର ଆବଶ୍ୟକତା ଅଛି ? ହଁ ଏହା ହିଁ ହେଲା ସ୍ୱାଭାବିକ କ୍ରମ । ଗୁରୁଙ୍କର ମଧ୍ୟ କେତୋଟି

ବୈଶିଷ୍ଟ୍ୟ ଥିବା ଦରକାର, ଯାହାଦ୍ୱାରା ସେ ଅନ୍ଧଙ୍କୁ ପଥ ଦେଖାଇ ପାରିବେ । ପ୍ରଥମେ ତାଙ୍କୁ 'ଶ୍ରୋତ୍ରିୟ' ଅର୍ଥାତ୍ ଶାସ୍ତ୍ରଜ୍ଞ ହେବାକୁ ପଡ଼ିବ । କିନ୍ତୁ କେବଳ ପାଣ୍ଡିତ୍ୟ ଥିଲେ ଗୁରୁ ହୋଇପାରନ୍ତି ନାହିଁ । ପ୍ରକୃତ ଜ୍ଞାନୀ ହୋଇଥିବା ଦରକାର, ତତ୍ତ୍ୱକୁ ଉପଲବ୍ଧି କରିଥିବା ଦରକାର । ଜ୍ଞାନୀମାନେ ତତ୍ତ୍ୱବେତ୍ତା, ତତ୍ତ୍ୱଦ୍ରଷ୍ଟା । ଦ୍ୱିତୀୟତଃ ସିଏ 'ଅବୃଜିନ' ଅର୍ଥାତ୍ ନିଷ୍ପାପ ହେବେ ଏବଂ ଶାସ୍ତ୍ରାନୁଯାୟୀ ତାଙ୍କ ଜୀବନଚର୍ଯ୍ୟା ହୋଇଥିବ । ସର୍ବଶେଷରେ ସିଏ 'ଅକାମହତ' ଅର୍ଥାତ୍ ସମ୍ପୂର୍ଣ୍ଣ ଭାବରେ କାମନାଶୂନ୍ୟ ହେବେ । ଶିଷ୍ୟଙ୍କ ସହିତ ତାଙ୍କର ସମ୍ପୂର୍ଣ୍ଣ ନିଃସ୍ୱାର୍ଥପର ସମ୍ପର୍କ ରହିବ । ମନ୍ତ୍ର ଦାନ କଲାପରେ ଶିଷ୍ୟ ନିକଟରୁ କୌଣସି ସ୍ୱାର୍ଥସିଦ୍ଧିର ବାସନା ତାଙ୍କର ରହିବ ନାହିଁ । କାହାକୁ ଗୁରୁରୂପେ ଗ୍ରହଣ କରିବା ପୂର୍ବରୁ ଏହି ଗୁଣ ସବୁ ଆମର ପ୍ରଧାନ ବିବେଚ୍ୟ ହେବା ଉଚିତ ।

ଆଉ ଶିଷ୍ୟର କେଉଁ ସବୁ ଗୁଣ ରହିବା ଦରକାର ? ଅଭୀଷ୍ଟ ଆଦର୍ଶରେ ପହଞ୍ଚିବା ପାଇଁ ଶିଷ୍ୟର ଐକାନ୍ତିକ ଆଗ୍ରହ ଥିବା ଦରକାର । କେବଳ କୌତୁହଳ ଚରିତାର୍ଥ କରିବା ପାଇଁ ଦୀକ୍ଷା ନେବା ଆମର ଯେପରି ଉଦ୍ଦେଶ୍ୟ ନ ହୁଏ । ଗୁରୁଙ୍କ ନିର୍ଦ୍ଦେଶ ଅନୁସରଣ କରିବା ପାଇଁ ପରମ ନିଷ୍ଠା ଥିବା ଦରକାର । ଶିଷ୍ୟର ଚରିତ୍ର ଶୁଦ୍ଧ ହେବା ଦରକାର । ଗୁରୁ ଏବଂ ଶିଷ୍ୟ ଉଭୟଙ୍କର ଚରିତ୍ର ଶୁଦ୍ଧି ଉପରେ ସମାନ ଗୁରୁତ୍ୱ ଦିଆଯାଇଛି । ଉଦ୍ଧତ ନ ହୋଇ ଶିଷ୍ୟକୁ ବିନୀତ ହେବାକୁ ପଡ଼ିବ । ଗଭୀର ଶ୍ରଦ୍ଧା ଭାବ ନ ରହିଲେ ଗୁରୁଙ୍କର ଆଶ୍ରୟ ନେବା ସମ୍ଭବ ନୁହେଁ । କିନ୍ତୁ ଗୁରୁକରଣ କରିବା ପୂର୍ବରୁ ତାଙ୍କୁ ଯଥା ସମ୍ଭବ ପରୀକ୍ଷା କରି ନେବା ପ୍ରୟୋଜନ ରହିଥିଲେ ସୁଦ୍ଧା, ଗୁରୁ ପଦରେ ବରଣ କଲାପରେ ନିଷ୍ଠା ସହିତ ତାଙ୍କୁ ଅନୁସରଣ କରିବା ଶିଷ୍ୟର ଏକାନ୍ତ ପ୍ରୟୋଜନ । ଗୁରୁଙ୍କ ଜ୍ଞାନ ସମ୍ଭାର ଗ୍ରହଣ ପ୍ରକ୍ରିୟାରେ ଶିଷ୍ୟର ନମ୍ରତା ହିଁ ଉପଯୁକ୍ତ ଆଧାର ହେବ । ବିନୟ, ଐକାନ୍ତିକତା, ପବିତ୍ରତା ଏବଂ ସେବା କରିବାର ମନୋଭାବ ନଥିଲେ 'ଗୁରୁସଙ୍ଗ' କରି କୌଣସି ଲାଭ ହୁଏ ନାହିଁ । ଏଥିପାଇଁ ଉପନିଷଦ୍‌ରେ କୁହାଯାଇଛି : ''ତଦ୍‌ବିଜ୍ଞାନାର୍ଥଂ ସ ଗୁରୁମେବାଭିଗଚ୍ଛେତ୍ ସମିତ୍‌ପାଣିଃ ଶ୍ରୋତ୍ରିୟଂ ବ୍ରହ୍ମନିଷ୍ଠମ୍'' । (ମୁଣ୍ଡକ ଉପନିଷଦ୍, ୧/୨/୧୨) ଶିଷ୍ୟ ସମିଧ ହାତରେ ଜ୍ଞାନୀ ଓ ବ୍ରହ୍ମଜ୍ଞାନୀ ଗୁରୁଙ୍କ ସମୀପକୁ ଯାଏ । 'ସମିଧ' ହେଲା ସେବାର ପ୍ରତୀକ । ସେ ଯୁଗରେ ଯଜ୍ଞାନୁଷ୍ଠାନ ପାଇଁ ଗୁରୁଙ୍କର ସମିଧ ପ୍ରୟୋଜନ ହେଉଥିଲା । ଯଜ୍ଞକାଷ୍ଠର ବୋଝ ନେଇ ଗୁରୁ ସମୀପକୁ ଯିବା ଅର୍ଥ—ଶିଷ୍ୟ ଗୁରୁଙ୍କର ସେବା କରିବାକୁ ଇଚ୍ଛୁକ । ଏହାଦ୍ୱାରା ଗୁରୁ ଯେ ପ୍ରସନ୍ନ ହେବେ ତାହା ନୁହେଁ । ଗୁରୁଙ୍କ ନିର୍ଦ୍ଦେଶ ମାନିବା ପାଇଁ ଶିଷ୍ୟର ଯେଉଁ ଚିତ୍ତଶୁଦ୍ଧି ଦରକାର, ତାହା ଏହି ସେବା ଦ୍ୱାରା ସମ୍ପନ୍ନ ହୋଇଥାଏ । ଏହା ପରେ ଶିଷ୍ୟ ବିନା ପ୍ରଶ୍ନରେ ଆନ୍ତରିକ ଶ୍ରଦ୍ଧା ସହିତ ଗୁରୁବାକ୍ୟ ମାନି ଚାଲିଥାଏ ।

ଧର୍ମଦାନ ଅର୍ଥୋପାର୍ଜନ ବା ବ୍ୟବସାୟ ନୁହେଁ, ଧର୍ମଗ୍ରହଣ ମଧ୍ୟ ଦୋକାନଦାରି

ନୁହେଁ । ଗୁରୁ-ଶିଷ୍ୟର ସମ୍ପର୍କକୁ ବ୍ୟାହତ କରେ ସ୍ୱାର୍ଥ । ଶିଷ୍ୟ ଭିତରେ ପରିପୂର୍ଣ୍ଣ ନମ୍ରତା ଓ ସେବା ମନୋଭାବ ରହିବ, କୌଣସି ଜିନିଷ ବିନିମୟରେ ବିଦ୍ୟା କ୍ରୟ ନକରି, ଶିକ୍ଷାର୍ଥୀ ରୂପେ ଗୁରୁଙ୍କ ପଦତଳେ ନିଜକୁ ସମର୍ପଣ କରିବାକୁ ହେବ । ଆଧ୍ୟାତ୍ମିକ ଜ୍ଞାନ ହେଲା ବିନୟ ଓ ସେବାର ମନୋଭାବ ଦ୍ୱାରା ଅର୍ଜିତ ଗୁରୁଙ୍କ ଦାନସ୍ୱରୂପ । ଗୁରୁ ଶିଷ୍ୟକୁ ଦୀକ୍ଷା ଦେଇ ତା'ର ସାଧନା ପଥ ସୂଚେଇ ଦେଇଥାନ୍ତି । ସ୍ୱାମୀ ବ୍ରହ୍ମାନନ୍ଦ ଏ ବିଷୟରେ ଅନେକ ଉପଦେଶ ଦେଇଛନ୍ତି । ତାଙ୍କ ଉପଦେଶାବଳୀ ପଢ଼ିଲେ ଅତି ମୂଲ୍ୟବାନ ନିର୍ଦ୍ଦେଶ ସବୁ ମିଳିଥାଏ । ସ୍ୱାମୀ ବ୍ରହ୍ମାନନ୍ଦ ଅତି ସହଜ ଏବଂ ସ୍ପଷ୍ଟ ଭାବରେ ଶିକ୍ଷା ଦେଇଛନ୍ତି ।

ଅଧ୍ୟୟନ ଦ୍ୱାରା ଆଧ୍ୟାତ୍ମିକ ଜ୍ଞାନ ଲାଭ କରାଯାଏ ନାହିଁ । ନମ୍ରତା, ଧୈର୍ଯ୍ୟ ଓ ଦୃଢ଼ ବିଶ୍ୱାସ ସହିତ କଠୋର ସାଧନା ଦ୍ୱାରା ତାହା ଲାଭ କରାଯାଇଥାଏ । ବିଶ୍ୱାସ ଉପରେ ବେଶୀ ଜୋର ଦେବା ପ୍ରୟୋଜନ । ବିଶ୍ୱାସ ଅତି ଗୁରୁତ୍ୱପୂର୍ଣ୍ଣ । ବିଜ୍ଞାନ ପଢ଼ିବାକୁ ବିଶ୍ୱାସର ପ୍ରୟୋଜନ ହୁଏ ନାହିଁ । କିନ୍ତୁ ଶାସ୍ତ୍ର ଅଧ୍ୟୟନ, ବିଶେଷ କରି ଧର୍ମ-ଜୀବନ ଯାପନ କରିବା ପାଇଁ ବିଶ୍ୱାସ ଅତି ପ୍ରୟୋଜନ । ବିଶ୍ୱାସର ପ୍ରୟୋଜନୀୟତା ସମ୍ପର୍କରେ ବେଦରେ ଏକ ସୁନ୍ଦର ଦୃଷ୍ଟାନ୍ତ ଅଛି । ଗୁରୁ ଶିଷ୍ୟକୁ କହୁଛନ୍ତି ଯେ, ବ୍ରହ୍ମ ଅତି ସୂକ୍ଷ୍ମ ଏବଂ ସେଥିରୁ ବିଶ୍ୱ ବ୍ରହ୍ମାଣ୍ଡ ଉତ୍ପନ୍ନ ହୋଇଛି । ପରମ ସତ୍ତାର ଅଖଣ୍ଡତ୍ୱ ଓ ଏକତ୍ୱକୁ ବୁଝାଇବା ପାଇଁ ଗୁରୁ ଉଦାହରଣଟିଏ ଦେଲେ—ମହୁମାଛି ଯେପରି ମହୁଫେଣା ତିଆରି କଲାବେଳେ ନାନା ପ୍ରକାରର ଫୁଲରୁ ମହୁ ସଂଗ୍ରହ କରିଥାଏ, କିନ୍ତୁ ପରେ ସବୁ ମିଶି ଏକ ହୋଇଯାଏ; ସେପରି ସକଳ ଆତ୍ମା ହି ବ୍ରହ୍ମରେ ଏକତ୍ୱ ଲାଭ କରିଥାଏ । ଏକଥା ଶୁଣି ଶିଷ୍ୟ କହିଲା, ଦୟା କରି ମୋତେ ଆଉ ଟିକେ ବ୍ୟାଖ୍ୟା କରି ବୁଝାନ୍ତୁ । ଅର୍ଥାତ୍ ଗୁରୁଙ୍କ ଶିକ୍ଷାରୁ ଶିଷ୍ୟର ଆଶାନୁରୂପ ତତ୍ତ୍ୱ ଉପଲବ୍ଧି ହେଲାନାହିଁ । ଗୁରୁ ସେତେବେଳେ ଆଉ ଏକ ଦୃଷ୍ଟାନ୍ତ ଦେଲେ । ଶିଷ୍ୟ ପୁଣି ସେହି ପ୍ରଶ୍ନର ପୁନରାବୃତ୍ତି କଲା । ଗୁରୁ ଆଉ ଗୋଟିଏ ଉଦାହରଣ ଦେଲେ । ଶିଷ୍ୟ ଅଧିକ ବ୍ୟାଖ୍ୟା କରିବାକୁ କହିଲା । ଶେଷରେ ଗୁରୁ କହିଲେ, ''ଶ୍ରଦ୍ଧସ୍ୱ ସୌମ୍ୟ''—ବତ୍ସ, ଶ୍ରଦ୍ଧାବାନ୍ ହୁଅ । ବ୍ୟାଖ୍ୟା, ବିଶ୍ଳେଷଣ, ଦୃଷ୍ଟାନ୍ତ ଦ୍ୱାରା ବ୍ରହ୍ମକୁ ବୁଝାଇ ହୁଏ ନାହିଁ । ଆମର ପ୍ରତ୍ୟକ୍ଷ ବା ଇନ୍ଦ୍ରିୟଗୋଚର ବିଷୟ ଉପରେ ନିର୍ଭର କରି ଦୃଷ୍ଟାନ୍ତ ଦିଆଯାଇଥାଏ, କିନ୍ତୁ ଆମେ ଏଠି ଏପରି ଏକ ବିଷୟକୁ ଜାଣିବାକୁ ଚାହୁଁଛୁ ଯାହାକି ଇନ୍ଦ୍ରିୟ'ର ଅଗୋଚର । ସୁତରାଂ ଏ ପଥରେ କ୍ରମଶଃ ଅଗ୍ରସର ହେବାକୁ ହେଲେ ପ୍ରଭୂତ ଶ୍ରଦ୍ଧା ଓ ବିଶ୍ୱାସ ରହିବା ଏକାନ୍ତ ପ୍ରୟୋଜନ । ବିଶ୍ୱାସ ବିନା ଆମେ ଆଗେଇ ପାରିବା ନାହିଁ ।

କିନ୍ତୁ ବିଶ୍ୱାସ ମାନେ କ'ଣ ଗୁରୁଙ୍କ କଥାକୁ ନିର୍ବିଚାରରେ ମାନି ନେବା ? ନା । ପ୍ରକୃତ ଗୁରୁ କେବେ ବି ସେପରି କହିବେ ନାହିଁ । ସ୍ୱୟଂ ଶ୍ରୀରାମକୃଷ୍ଣ ତାଙ୍କ

ଶିଷ୍ୟମାନଙ୍କୁ ଅନ୍ଧ ପରି ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଇନାହାଁନ୍ତି । କହିଛନ୍ତି : "ମୁଁ କହୁଛି ବୋଲି ମାନି ନିଅ ନାହିଁ । ଯେତେଟା ସମ୍ଭବ ନିଜ ବିଚାର-ବୁଦ୍ଧି ଦ୍ୱାରା ପରୀକ୍ଷା କରିନିଅ । ଯେତେବେଳେ ତାହା ସମ୍ପୂର୍ଣ୍ଣ ଠିକ୍ ବୋଲି ମନେ ହେବ ସେତେବେଳେ ମାନି ଚଳିବ, ନଚେତ୍ ନୁହେଁ ।"

ସୁତରାଂ ଗୁରୁଙ୍କ ଉପଦେଶ ଅନୁସରଣ କରିବାକୁ ଯାଇ ଆମକୁ ଯେ ଆମର ସକଳ ବିଚାର-ବୁଦ୍ଧି ବିସର୍ଜନ ଦେବାକୁ ହେବ, ତାହା ନୁହେଁ । ତେବେ ସର୍ବଦା ସଂଶୟାଚ୍ଛନ୍ନ ମନ ନେଇ ମଧ୍ୟ ଧର୍ମ ପଥରେ ଚାଲିବା ସମ୍ଭବ ନୁହେଁ । ଏପରି ମନଦ୍ୱାରା ଗୁରୁଙ୍କ ଉପଦେଶର ପ୍ରକୃତ ତାତ୍ପର୍ଯ୍ୟ ମଧ୍ୟ ଉପଲବ୍ଧି କରି ହେବ ନାହିଁ । ତେଣୁ ଶ୍ରୀରାମକୃଷ୍ଣ କହିଛନ୍ତି : ଗୁରୁଙ୍କୁ ଯେତିକି ପାରିବ ପରୀକ୍ଷା କରିନେବ । କିନ୍ତୁ ତୁମକୁ ସିଏ ଯଥାର୍ଥରେ ଚରମ ଲକ୍ଷ୍ୟରେ ପହଞ୍ଚାଇ ପାରିବେ—ଏ ବିଶ୍ୱାସ ଯଦି ଆସେ ତା'ହେଲେ ତାଙ୍କ ନିକଟରେ ଆତ୍ମ ସମର୍ପଣ କରିବ ।

ଗୁରୁଙ୍କ ନିକଟକୁ ଏପରି ବିଶ୍ୱାସ ସହିତ ଯିବାକୁ ପଡ଼ିବ ଏବଂ ପୂର୍ବୋଲ୍ଲିଖିତ ଗୁଣାବଳୀବିଶିଷ୍ଟ ଗୁରୁ ହିଁ କେବଳ ଆମର ପରମାର୍ଥ ଲାଭ କରିବାରେ ସାହାଯ୍ୟ କରିପାରିନ୍ତି । ଗୁରୁ ପ୍ରକୃତରେ ଜ୍ଞାନୀ ନହେଲେ କ'ଣ ହୁଏ? ଉପନିଷଦ୍ କହିଛନ୍ତି, ଏହା ଜଣେ ଅନ୍ଧ ଅନ୍ୟ ଜଣେ ଅନ୍ଧକୁ ବାଟ ଦେଖାଇବା ପରି ହୁଏ—

"ଅନ୍ଧେନୈବ ନୀୟମାନା ଯଥାନ୍ଧାଃ"—(କଠ ଉପନିଷଦ୍, ୧/୨/୫) ।

ପ୍ରଶ୍ନ ଉଠିପାରେ, ଅନ୍ୟକୁ ବିଚାର କରିବାର ଯୋଗ୍ୟତା ତ ମୋର ନାହିଁ, ମୋ ମନ ସ୍ୱଚ୍ଛ ନୁହେଁ, ଅନେକ ସନ୍ଦେହ ସଂଶୟ ରହିଛି; ତା'ହେଲେ ଯେଉଁ ଗୁରୁ ଆମଠାରୁ ଅନେକ ଊର୍ଦ୍ଧ୍ୱରେ ଅଛନ୍ତି, ତାଙ୍କୁ କିପରି ବିଚାର କରାଯିବ ? ଏପରି କ୍ଷେତ୍ରରେ ଯେତେଟା ସମ୍ଭବ ଗୁରୁଙ୍କ ପ୍ରକୃତ ଉଦ୍ଦେଶ୍ୟ ବିଷୟରେ ନିଃସଂଶୟ ହେବା ପାଇଁ ଚେଷ୍ଟା କରିବା ଉଚିତ୍ । ନିଜେ ହିଁ ବିଚାର କର, ସିଏ ତୁମର ଆଦର୍ଶ ହୋଇ ପାରିବେ କି ନାହିଁ; ତା'ପରେ ତାଙ୍କୁ ଗୁରୁ ରୂପେ ବରଣ କର । ଗୁରୁ ରୂପରେ ତାଙ୍କୁ ଥରେ ଗ୍ରହଣ କଲାପରେ ସର୍ବାନ୍ତଃକରଣରେ ତାଙ୍କ ନିକଟରେ ଆତ୍ମ ସମର୍ପଣ କର । ନଚେତ୍ ସନ୍ଦିଗ୍ଧ ମନରେ ସର୍ବଦା ଅଶାନ୍ତି ଆସିବ । ଧରାଯାଉ ଆମ ଗୁରୁ ପରମ ଲକ୍ଷରେ ପହଞ୍ଚି ନାହାନ୍ତି । ଉପନିଷଦ୍‌ରେ ଏପରି ଏକ ଦୃଷ୍ଟାନ୍ତ ଅଛି, ଯେଉଁଠି ଗୁରୁ କୌଣସି ଏକ ବିଷୟରେ ନିଜର ଅଜ୍ଞତା ସ୍ୱୀକାର କରିଛନ୍ତି । ଉଭୟ ଗୁରୁ ଶିଷ୍ୟ ସେମାନଙ୍କ ଅପେକ୍ଷା ସେହି ବିଷୟରେ ଅଧିକ ଜ୍ଞାନୀଙ୍କ ନିକଟକୁ ଗଲେ । ଯଥାର୍ଥରେ ଶିଷ୍ୟର ଉନ୍ନତି ଓ କଲ୍ୟାଣ ଯାହାଙ୍କର କାମ୍ୟ, ଯିଏ ଐକାନ୍ତିକ ଓ ଛଳନା-ରହିତ ସେ ଏହିପରି ହେବେ । ତାହେଲେ ଜଣେ ଅନ୍ଧ ଅନ୍ୟ ଜଣେ ଅନ୍ଧକୁ ରାସ୍ତା ଦେଖାଇଲା ପରି ଶୋଚନୀୟ ପରିଣତି ହୁଏ ନାହିଁ । ବରଂ ଗୁରୁ, ଶିଷ୍ୟର ସହଯାତ୍ରୀ ପରି ହେବେ

ଯିଏକି ଶିଷ୍ୟକୁ ଗନ୍ତବ୍ୟ ସ୍ଥଳରେ ପହଞ୍ଚାଇ ଦେବାକୁ ଉତ୍ସୁକ । ପ୍ରୟୋଜନ ହେଲେ ଗୁରୁ ଶିଷ୍ୟକୁ ଅନ୍ୟ କୌଣସି ଯୋଗ୍ୟତର ବ୍ୟକ୍ତିଙ୍କ ନିକଟକୁ ନେଇଯିବେ ବା ତାଙ୍କ ସନ୍ଧାନ ଦେବେ ।

ମନେକରାଯାଉ, ମୋ ବିଚାର ଅନୁସାରେ ମୁଁ ମୋର ଗୁରୁଙ୍କୁ ଖୋଜି ପାଇଲି, କିନ୍ତୁ ତାଙ୍କଠାରୁ ଯୋଗ୍ୟତର ଗୁରୁଙ୍କର କ'ଣ ପ୍ରୟୋଜନ ଅଛି ? ଆଗ୍ରହ ଐକାନ୍ତିକ ହେଲେ ସେହିପରି ଗୁରୁ ମିଳିଯିବେ । ମୂଳ କଥା ହେଲା ଆନ୍ତରିକତା । ଗଭୀର ଆନ୍ତରିକତା ସହିତ ଆମକୁ ଚାହିଁବାକୁ ହେବ । ଶ୍ରୀରାମକୃଷ୍ଣ କହିଛନ୍ତି, ଆନ୍ତରିକ ହେଲେ ଅନୁଗ୍ରହ ନିଶ୍ଚୟ ମିଳିବ । ଆହୁରି ମଧ୍ୟ କହିଛନ୍ତି, ଅନ୍ଧ କର, ତା'ହେଲେ କେହି ଆସି କହିଦେବେ, 'ଏହା ପରେ ତାହା !' ଆଧ୍ୟାତ୍ମିକ ଜୀବନରେ ଏହା ହିଁ ସତ୍ୟ । କାରଣ, ଈଶ୍ୱର ହିଁ ଏକମାତ୍ର ଗୁରୁ । ଈଶ୍ୱର ଜାଣନ୍ତି ଯେ ଆମେ ଭୁଲ କଲେ ଅନ୍ଧାରରେ ପଥ ଅଣ୍ଡାଳିବା । ସେ ଜାଣନ୍ତି—କେତେବେଳେ ଏବଂ କେଉଁ ଭାବରେ ସେ ତାଙ୍କ କୃପା ଆମ ଉପରେ ବର୍ଷଣ କରିବେ, ଆମକୁ କିପରି ରାସ୍ତା ଦେଖାଇବେ । ଅଭୀଷ୍ଟ ବିଷୟରେ ଆମେ ଐକାନ୍ତିକ ହେଲେ, ଭୁଲ କଲେ ମଧ୍ୟ ଭୟ ନଥାଏ । ଆମକୁ ଏହି କଥା ମନେ ରଖିବାକୁ ହେବ । ଐକାନ୍ତିକ ନ ଥିଲେ ଶ୍ରେଷ୍ଠ ବ୍ରହ୍ମଜ୍ଞ ବ୍ୟକ୍ତିଙ୍କ ଦ୍ୱାରା ନିର୍ଦ୍ଦେଶିତ ପଥ ମଧ୍ୟ କୌଣସି କାର୍ଯ୍ୟରେ ଲାଗିବ ନାହିଁ । ସୁତରାଂ ସାଧନା ପଥରେ ଗୁରୁ ଆମକୁ ପଥ ଦେଖାଇବେ ଏବଂ ସଂଶୟ ହେଲେ ଅଜ୍ଞାନ ଦୂର କରି ଉଚ୍ଚତର ଜ୍ଞାନ ଦେବେ—ଆମକୁ ଏହି ଦୃଷ୍ଟିରେ ଗୁରୁଙ୍କୁ ଦେଖିବାକୁ ହେବ । ଏହି ଭାବ ନେଇ ଶିଷ୍ୟକୁ ଚଳିବାକୁ ହେବ ।

ଆଉ ଗୋଟିଏ କଥା ବିଶେଷ ଭାବରେ ପ୍ରଣିଧାନ ଯୋଗ୍ୟ ଯେ, ଆଧ୍ୟାତ୍ମିକ ପଥ ସରଳ ନୁହେଁ । ଉପନିଷଦ୍ କହିଛନ୍ତି : ''କ୍ଷୁରସ୍ୟ ଧାରା ନିଶିତା ଦୂରତ୍ୟୟା ଦୁର୍ଗମ ପଥସ୍ତତ୍ କବୟୋ ବଦନ୍ତି'' (କଠ ଉପନିଷଦ୍, ୧/୩/୧୪) । ଜ୍ଞାନୀମାନେ କହନ୍ତି, ଆଧ୍ୟାତ୍ମିକ ପଥ ଅତ୍ୟନ୍ତ ଦୁର୍ଗମ, ତାହା କ୍ଷୁରଧାର ପରି ଶାଣିତ । ଏ ରାସ୍ତାରେ ଚାଲିଲେ ପାଦ କ୍ଷତବିକ୍ଷତ ହେବ, ଅତ୍ୟନ୍ତ କଷ୍ଟକର ଯାତ୍ରା । ପଥ ଯେତେ କଠିନ ହେଉନା କାହିଁକି, ଯଦି ଆମର ମନୋବଳ ଥାଏ, ତେବେ ରାସ୍ତାର ବାଧା ବିପତ୍ତିରେ ହତାଶ ନ ହୋଇ ଆଗେଇ ଯିବୁ । ଯିଏ ଭଗବାନଙ୍କୁ ଲାଭ କରିବାକୁ ଚାହେଁ ତା'ର ସୁଦୃଢ଼ ସଂକଳ୍ପ ଓ ବିଶ୍ୱାସ ରହିବା ନିଶ୍ଚିତ ଦରକାର । ଲୌକିକ ଜ୍ଞାନ ପରି ଇନ୍ଦ୍ରିୟଦ୍ୱାରା ପାରମାର୍ଥିକ ଅନୁଭୂତିକୁ ପରୀକ୍ଷା କରିବା ସମ୍ଭବ ନୁହେଁ । ଆଧ୍ୟାତ୍ମିକ ଜଗତରେ ଆମେ ଯାହାର ସନ୍ଧାନ କରୁ ତାହା ଇନ୍ଦ୍ରିୟ ଅଗୋଚର । ଯଦି ଆମେ ରାସ୍ତାରେ ଚାଲିବାକୁ ଇତସ୍ତତଃ କରୁ ବା ପାଦେ ଦୁଇପାଦେ ଆଗେଇ ସନ୍ତୁଷ୍ଟ ହୋଇ ବସି ରହୁ, ତେବେ କଦାପି ଲକ୍ଷ୍ୟରେ ପହଞ୍ଚି ପାରିବା ନାହିଁ । ଆମର ଅପରିସୀମ ଧୈର୍ଯ୍ୟ ରହିବା ଦରକାର

ଯାହାର ଆଗାମୀ କେତେ ଜନ୍ମରେ ମଧ୍ୟ ନିଃଶେଷିତ ହେବ ନାହିଁ । ଅବଶ୍ୟ ଦିନେ ଦୁଇ ଦିନରେ, ଏପରିକି ଦୁଇ-ଚାରି ବର୍ଷରେ ମଧ୍ୟ ଏହିପରି ଧୈର୍ଯ୍ୟ ଲାଭ କରି ହୁଏ ନାହିଁ । କିନ୍ତୁ ଆମର ଅଭୀଷ୍ଟ ଏପରି ଅମୂଲ୍ୟ ସମ୍ପଦର ସନ୍ଧାନ ପାଇଁ ବହୁ ଜନ୍ମ ବ୍ୟୟିତ ହେବା କିଛି ନୁହେଁ । ଉପଯୁକ୍ତ ମୂଲ୍ୟ ନଦେଲେ ଜଗତରେ କିଛି ମିଳେନାହିଁ । ଏପରିକି ଆମର ତୀବ୍ର ସଂଗ୍ରାମ ସତ୍ତ୍ୱେ ଲକ୍ଷ୍ୟ ଅନେକ ଦୂରରେ ବୋଲି ହତାଶା ଆସିପାରେ । କିନ୍ତୁ ହତାଶ ନ ହୋଇ ଆମକୁ ଅପେକ୍ଷା କରିବାକୁ ହେବ । କିଏ ଜାଣେ, ହୁଏତ ଅଭୀଷ୍ଟ ବସ୍ତୁ ଆମମାନଙ୍କ ହାତ ପାହାନ୍ତାରେ ଅଛି । କିଏ କହିପାରିବ କେତେବେଳେ ସେହି ଶୁଭକ୍ଷଣଟି ଆସି ପହଞ୍ଚିଯିବ ।

ବାଇବେଲ୍‌ର ଦଶଜଣ କୁମାରୀଙ୍କ ଗପ ଅନେକଙ୍କୁ ଜଣା । ଦିନେ ରାତିରେ ପ୍ରଦୀପ ନେଇ ସେମାନେ ବରକୁ ଆଣିବାକୁ ଯାଇଥିଲେ, କିନ୍ତୁ ବର ଆସିବାରେ ବହୁତ ବିଳମ୍ବ ହେଉଥିଲା । ସେମାନେ ବହୁତ ବେଳୁ ଅପେକ୍ଷା କରିଥାନ୍ତି । ଏହି ଦଶଜଣଙ୍କ ଭିତରୁ ପାଞ୍ଚଜଣ ପ୍ରଦୀପ ଏବଂ ତେଲ ସେମାନଙ୍କ ସାଙ୍ଗରେ ନେଇଥିଲେ, ବାକି ପାଞ୍ଚଜଣଙ୍କର କେବଳ ପ୍ରଦୀପ ଥିଲା, ତେଲ ନଥିଲା । ତେଲ ନଥିବା ଦଳଟି ପ୍ରଥମ ଦଳକୁ କହିଲେ : ଆମକୁ ଟିକିଏ ତେଲ ଦେବ କି ? କେହି ଦେଲେନାହିଁ । ତେଣୁ ସେମାନେ ତେଲ ସନ୍ଧାନରେ ବାହାରିଲେ । ଏତିକିବେଳେ ବର ଆସି ପହଞ୍ଚିଲା । ଯେଉଁ କୁମାରୀମାନଙ୍କ ପ୍ରଦୀପରେ ତେଲ ଥିଲା ସେମାନେ ଉଜ୍ଜ୍ୱଳ ପ୍ରଦୀପ ହାତରେ ବରକୁ ଗୃହକୁ ପାଛୋଟି ନେଲେ । କିନ୍ତୁ ଅନ୍ୟ ପାଞ୍ଚଜଣ କୁମାରୀ ବର ଦେଖିବା ଆନନ୍ଦରୁ ବଂଚିତ ହେଲେ । (Gospel of St.Matthew. Ch. 25) ଯେଉଁ ଭଗବତ୍-ସନ୍ଧାନୀମାନଙ୍କ ପ୍ରଦୀପରେ ଧୈର୍ଯ୍ୟର ଇନ୍ଧନ ନାହିଁ, ସେମାନଙ୍କ କ୍ଷେତ୍ରରେ ମଧ୍ୟ ଏପରି ଘଟିପାରେ । ଆମ ଅନ୍ୱେଷଣର ଉଦ୍ଦେଶ୍ୟ ଏତେ ମହତ୍ ଯେ, ତାହା ପାଇଁ କୌଣସି ମୂଲ୍ୟ ମଧ୍ୟ ଯଥେଷ୍ଟ ନୁହେଁ । କାରଣ, ତାହା ଅମୂଲ୍ୟ ସମ୍ପଦ ।

ଏ ସମ୍ପର୍କରେ ବେଦରେ ଗୋଟିଏ କାହାଣୀ ଅଛି । ଯଜ୍ଞ ପାଇଁ ଅପରିହାର୍ଯ୍ୟ ପବିତ୍ର ସୋମଲତା ବିକିବାକୁ ଜଣେ ଆସିଛି । ଜଣେ ବ୍ୟକ୍ତି ଏହି ଯଜ୍ଞ କରୁଥିଲେ । ଏହି ଲତା କିଣିବେ ବୋଲି ସେ ମୂଲେଇଲେ । ସେ ପ୍ରଥମେ କୋଡ଼ିଏ କଉଡ଼ିରୁ ମୂଲେଇବା ଆରମ୍ଭ କଲେ । ତା'ପରେ ଦାମ୍ ବଢ଼ାଇଲେ, କିନ୍ତୁ ବିକାଳି କେବଳ କହି ଚାଲିଲା : "ରାଜା ସୋମୋ ତତୋ ଏବ ଭୂୟାତ୍ ।"—ସୋମର ଦାମ୍ ତା'ଠାରୁ ମଧ୍ୟ ବେଶୀ । ଯଜ୍ଞକର୍ତ୍ତା ତାଙ୍କର ସର୍ବସ୍ୱ ଦେଇ କିଣିବାକୁ ଚାହିଁଲାରୁ ସେହି ଏକା ସଂକ୍ଷିପ୍ତ ଉତ୍ତର ପାଇଲେ: "ରାଜା ସୋମୋ ତତୋ ଏବ ଭୂୟାତ୍ ।" ଶେଷରେ ଯଜମାନ ଯେତେବେଳେ ବୁଝିଲେ ଯେ ସେ ମୂଲ୍ୟ ଦେଇ କିଣି ପାରିବେ ନାହିଁ, ସେତେବେଳେ ସବୁତକ ସୋମଲତା ଲୁଟିନେଲେ ।

ଭାଗବତରେ ମଧ୍ୟ ଅନୁରୂପ ଭାବ ସୁନ୍ଦର ଭାବରେ ବ୍ୟକ୍ତ ହୋଇଛି । ବାଳକ କୃଷ୍ଣଙ୍କ ଦୁଷ୍ଟାମୀରେ ପ୍ରତିବେଶୀମାନେ ଅତିଷ୍ଠ ହୋଇ ମାତା ଯଶୋଦାଙ୍କୁ ଅନେକ ଅଭିଯୋଗ କରିବାକୁ ଆସିଛନ୍ତି । ଫଳରେ ଯଶୋଦା କୃଷ୍ଣଙ୍କ ଉପରେ ରୁଷ୍ଟ ହୋଇଛନ୍ତି । ସେ କୃଷ୍ଣଙ୍କୁ ବାନ୍ଧି ରଖିବାକୁ ଠିକ୍ କଲେ । ଗଉଡ଼ ଘରେ ତ ଦଉଡ଼ିର ଅଭାବ ନାହିଁ । କୃଷ୍ଣଙ୍କୁ ବାନ୍ଧିବାକୁ ଯାଇ ଦେଖିଲେ ଦଉଡ଼ି ଦୁଇ ଆଙ୍ଗୁଳି ଛୋଟ ହେଲା । ତେଣୁ ସେ ଆଉ ଖଣ୍ଡିଏ ଦଉଡ଼ି ଯୋଡ଼ିଲେ । ତଥାପି ଦି'ଆଙ୍ଗୁଳି ଦଉଡ଼ି କମ୍ ହେଲା । ସେତେବେଳେ ଘରେ ଯେତେ ଦଉଡ଼ି ଥିଲା ସବୁ ଆଣି ଯୋଡ଼ା ହେଲା, ତଥାପି ସେଇ ଦି'ଆଙ୍ଗୁଳି ଦଉଡ଼ି କମ୍ ହେଲା । କ୍ଳାନ୍ତ ହୋଇ ଶେଷକୁ ଆଉ ପାରିଲେନାହିଁ । ମାତା ଯଶୋଦା କୃଷ୍ଣଙ୍କୁ ବାନ୍ଧିବା ଆଶା ଛାଡ଼ିଦେଲେ । ସେତେବେଳେ ଯାଇ କୃଷ୍ଣ ଧରା ଦେଲେ । ଏହାର ତାତ୍ପର୍ଯ୍ୟ ହେଲା—ଆମେ ଯଥାସାଧ୍ୟ ସାଧନା କରି ମଧ୍ୟ ଭଗବାନଙ୍କୁ ଲାଭ କରିପାରୁନା । ତାଙ୍କର ଦୟା ହେଲେ ସେ ଧରା ଦେବେ । "ଯମେବୈଷ ବୃଣୁତେ ତେନ ଲଭ୍ୟଃ ।" (କଠ ଉପନିଷଦ୍, ୧/୨/୨୩) ଶେଷ ପର୍ଯ୍ୟନ୍ତ ତାଙ୍କ କୃପା ଉପରେ ନିର୍ଭର କରିବାକୁ ହେବ । ଯେତେବେଳେ ଆମେ ତାଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରି ତାଙ୍କ କୃପା ଉପରେ ନିର୍ଭର କରି ରହି ପାରିବା, ସେତେବେଳେ ଆମର ସବୁ ସାଧନା ପରିପୂର୍ଣ୍ଣତା ଲାଭ କରିବ ।

୧. ଯାହାର ଯେପରି ଭାବ, ତାହାର ସେହିପରି ଲାଭ ହୁଏ ; ଅର୍ଥାତ୍ ଯେ କେବଳ ଭଗବାନଙ୍କୁ ଚାହେଁ, ସେ ତାଙ୍କୁ ହିଁ ପାଏ ; ଆଉ ଯେ ଐଶ୍ୱର୍ଯ୍ୟକାମନା କରେ ସେ ତାହା ହିଁ ପାଇଥାଏ ।

୨. ପଥର ହଜାର ବର୍ଷ ପାଣିରେ ପଡ଼ି ରହିଲେ ମଧ୍ୟ ତା'ଭିତରେ କେବେ ହେଲେ ପାଣି ପଶିପାରେ ନାହିଁ ; କିନ୍ତୁ ମାଟିରେ ପାଣି ଲାଗିଲାକ୍ଷଣି ମାଟି ମିଳାଇଯାଏ । ଯେଉଁମାନେ ବିଶ୍ୱାସୀ ଓ ଭକ୍ତ ସେମାନେ ହଜାର ହଜାର ଆପଦ ବିପଦରେ ପଡ଼ିଲେ ମଧ୍ୟ ହତାଶ ହୁଅନ୍ତି ନାହିଁ ; କିନ୍ତୁ ଅବିଶ୍ୱାସୀ ମନୁଷ୍ୟର ମନ ସାମାନ୍ୟ କାରଣରେ ଟଳିଯାଏ ।

—ଶ୍ରୀ ରାମକୃଷ୍ଣପରମହଂସଦେବ